# ସରଳ ସାହିତ୍ୟ

## ପ୍ରଥମ ସୋପାନ



### ଖଡ଼ିଛୁଆଁ

ଆଜି ରାଧାମୋହନର ଖଡ଼ିଛୁଆଁ ହେବ । ତାର ବୟସ ଚାରି ବର୍ଷ ପୂର୍ଣ୍ଣ ହୋଇ ଏବେ ପାଞ୍ଚ ଚାଲୁଛି । ତାହାର ପିତା ମାତା ତାକୁ ଚାଟଶାଳୀକି ପଠାଇବାର ସ୍ଥିର କରିଛନ୍ତି । ଆଜି ମାଘ ଶ୍ରୀପଞ୍ଚମୀ, ସରସ୍ୱତୀ ଦେବୀଙ୍କ ପୂଜା ଦିନ — ଭଲ ଦିନ । ଆଜି ରାଧାମୋହନ ଶୁଭ ମୁହୂର୍ତ୍ତରେ ଲେଖା ପଢ଼ା ଆରମ୍ଭ କରିବ ।

ଆଜି ବାଳକ ବାଳିକାମାନଙ୍କ ଆନନ୍ଦର ଆଉ ସୀମା ନାହିଁ । ଚାଟଶାଳୀ ଘର ପବିତ୍ର ଶଙ୍ଖଧ୍ୱନିରେ ନାଚି ଉଠୁଛି, ନାନା ଫୁଲରେ ଶୋଭା ପାଉଛି । ସହରର ପ୍ରତ୍ୟେକ ସ୍ଥାନ ବାଦ୍ୟର ମଧୁର ଶବ୍ଦରେ ଉଚ୍ଛୁଳି ପଡ଼ୁଛି । ବାଳକମାନେ ନାନା ରକମର ନୂଆ ଲୁଗା ପିନ୍ଧି, ନଡ଼ିଆ ଓ ଅନ୍ୟାନ୍ୟ ପୂଜା-ଦ୍ରବ୍ୟ ଧରି ଚାଟଶାଳୀକି ଯାଉଛନ୍ତି । ସେମାନଙ୍କର ନୂତନ ବେଶ ଏବଂ ସନ୍ତୋଷପୂର୍ଣ୍ଣ ମୁଖ ଦେଖି ଅବଧାନ ଆଜି ଅତ୍ୟନ୍ତ ପ୍ରୀତ । କେତେ ଜଣ ବାଳକ ଧଳା ଘାର 'ଯାହାକୁ ଜନ୍ମେ ଶ୍ରୀଫଳ ପ୍ରାଏ, ତ ତାକୁ ବିଦ୍ୟା ପ୍ରାପତ' ଇତ୍ୟାଦି ଗୀତ ଗାଇ ଗାଇ ଘାଣ୍ଟି ବୁଲିବାକୁ ବାହାର ପଡ଼ିଲେଣି ।

ବଡ଼ ସକାଳୁ ରାଧା[illegible]

[illegible] ଆସିଲେ, [illegible]

ଗୃହର ଖଣ୍ଡିଏ ଲମ୍ବାଇ ଦେଲେ । ରାଧାମୋହନ ତାହାର ପିତା ମାତା ଆଉ ଗୁରୁଜନଙ୍କୁ ପ୍ରଣାମ କଲା । ପରେ ତା ବାପା ତାକୁ ସଙ୍ଗେ ଧରି ଚଟଶାଳୀକି ଗଲେ ।

ଚଟଶାଳୀଟି ବାଳକମାନଙ୍କରେ ପୂର୍ଣ୍ଣ । ଅବଧାନ ହାତରେ ବେତ ଖଣ୍ଡିଏ ଧରି ସେମାନଙ୍କ ମଧ୍ୟରେ ବସିଛନ୍ତି । ଚଟଶାଳୀର ଗୋଟିଏ ଭାଗରେ ଖଡ଼ିପଟା, ଆଉ ଗୋଟିଏ ଜାଗାରେ ପୁସ୍ତକ, ଦୁଆତ, କଲମ ସବୁ ରଖାଯାଇଛି । ରାଧାମୋହନର ପିତା ତାହାର ହାତ ଧରି ଅବଧାନଙ୍କ ପାଖରେ ଯାଇ ଠିଆ ହେଲେ, କହିଲେ,—'ଅବଧାନେ, ଆଜି ମୋ ପୁଅ ମୋହନକୁ ଖଡ଼ି ଛୁଆଇଁ ଦେବେ ।' ମୋହନ ଅବଧାନଙ୍କୁ ପ୍ରଣାମ କଲା ।

ଅବଧାନ କହିଲେ,—'ଭଲ ହେଲା । ଆ ମୋହନ, ମୋ ପାଖରେ ବସ ।'

ଏହା କହି ସେ ମୋହନକୁ ବଡ଼ ଆଦର କରି ପାଖରେ ବସାଇଲେ । ପରେ ଗୁରୁ ଖଣ୍ଡିଏ ପଟା ଉପରେ ଖଡ଼ିରେ 'ସି ଦ୍ଧି ର ସ୍ତୁ' ଲେଖି ମୋହନକୁ ଖଡ଼ିଟି ଦେଲେ, ଆଉ ତା ହାତ ଧରି ସେହି ଚାରି ଅକ୍ଷର ଉପରେ ତା ଖଡ଼ି ବୁଲାଇ ଦେଲେ ।

ବିଦ୍ୟାରମ୍ଭ ହେବା ପରେ ମୋହନ ଅବଧାନଙ୍କୁ ଆଉ ଥରେ ନମସ୍କାର କଲା । 'ତୋର ବହୁତ ବିଦ୍ୟା ହେଉ, ତୁ ବଡ଼ ଲୋକ ହୁଅ' ବୋଲି ଗୁରୁ ତାହାକୁ ଆଶୀର୍ବାଦ କଲେ ।

କେତେକ ସମୟ ପରେ ପିଲାମାନେ ଶ୍ରୀପଞ୍ଚମୀ ଉତ୍ସବ ସ ଗୁରୁଙ୍କ ନିକଟରୁ ବିଦାୟ ନେଇ ସେ ଯାହା ଘରକୁ ଆନନ୍ଦ ବାହୁଡ଼ିଲେ ।

ପ୍ରଶ୍ନ—ଖଡ଼ିଛୁଆଁ କାହାକୁ କହନ୍ତି ?
ତୁମର କେତେ ବର୍ଷ ବୟସରେ ଖଡ଼ି ଛୁଇଁ ଥି

ଗୁମର ଖଡ଼ିଛୁଆଁ ବସପୃ ନିଜ କଥାରେ କହ ।
ମୁହୂର୍ତ୍ତ, ଉଛୁଳ ପଡୁଛି, ଅବଧାନ, ଗୁରୁଜନ, ପ୍ରଣାମ,
ଆଶୀର୍ବାଦ, ଉତ୍ସବ, ବଦାସୃ—ଏ ଗୁଡ଼ିକର ଅର୍ଥ କଣ ?



# ରୋଗୀ ଓ ବୈଦ୍ୟ

ଥରେ ଜଣେ ଲୋକର ଖୁବ୍ ପେଟବଥା ହେଲା । ସେ ଔଷଧ ପାଇଁ ଜଣେ ବୈଦ୍ୟଙ୍କ ନିକଟକୁ ଗଲା । ବୈଦ୍ୟ ତାହାର ରୋଗ କଥା ଶୁଣି ପଚାରିଲେ, 'ତୁମେ ଆଜି ସକାଳେ କଣ ଖାଇଥିଲ ?' ରୋଗୀ ଉତ୍ତର କଲା, 'ଦରସିଝା ଭାତ ଆଉ ଦରସିଝା ଆଳୁତରକାରୀ ଖାଇଥିଲି ।'

ବୈଦ୍ୟ କହିଲେ, 'ଆଗେ ତୁମ ଚକ୍ଷୁ ଭଲ କରିବା ସକାଶେ ଔଷଧ ଦେଉଛି, ନିଅ ।' ରୋଗୀ ଆଶ୍ଚର୍ଯ୍ୟରେ ପଚାରିଲା, 'ଏ କି କଥା ! ପେଟବଥା ଘୁଞ୍ଚାଇବାକୁ ଚକ୍ଷୁ ପାଇଁ ଔଷଧ ଦେଉଛନ୍ତି କାହିଁକି ? ଚକ୍ଷୁ ସକାଶେ ଔଷଧ ବ୍ୟବହାର କଲେ ପେଟବଥା ବନ୍ଦ ହେବ କିପରି ?'

ପରେ ବୈଦ୍ୟ କହିଲେ —'ଉତ୍ତମରୂପେ ସିଝା ହୋଇ ନ ଥିବା ଖାଦ୍ୟଦ୍ରବ୍ୟ ଖାଇଲେ ତାହା ହଜମ ହୁଏ ନାହିଁ, ଏଣୁ ପେଟବଥା ହୁଏ । ତୁମ ଚକ୍ଷୁ ଉତ୍ତମ ଅବସ୍ଥାରେ ନାହିଁ । ତାହା ଭଲ ଥିଲେ, ତୁମେ ସକାଳେ ଯାହା ଖାଇଲ, ତାହା ଭଲ କରି ଦେଖି ପାରିଥା'ନ୍ତ— ଦରସିଝା ଭାତ ଓ ଆଳୁ ଖାଇ ନ ଥା'ନ୍ତ । ଏଣୁ ପ୍ରଥମେ ତୁମ ଚକ୍ଷୁ ପାଇଁ ଔଷଧ ଦେଉଛି ।'

ରୋଗୀ ଲଜ୍ଜାରେ ସେଠାରୁ ଚାଲିଗଲା ।

ପ୍ରଶ୍ନ—ଏହି ଗଳ୍ପରୁ କଣ ଶିଖିଲ ?
ବୈଦ୍ୟ ଲୋକମାନଙ୍କର କି ଉପକାର କରେ ?



# ଛେଳି



ଯେଉଁ ପଶୁମାନେ ଖାଦ୍ୟ ପଦାର୍ଥ ପେଟରେ ଭର୍ତ୍ତି କରିବା ପରେ ତାହା ଅନ୍ୟ ଥରେ ତୁଣ୍ଡକୁ ଆଣି ଚୋବାଇ ଗିଳନ୍ତି, ସେମାନଙ୍କୁ ରୋମନ୍ଥକ ଜନ୍ତୁ କହାଯାଏ । ଏପରି ପାକୁଳେଇ ଚୋବାଇ ଗିଳିବା କାର୍ଯ୍ୟକୁ କେହି କେହି 'ପଝ୍ଝା ମାରିବା' ମଧ୍ୟ କହନ୍ତି । ଗୋରୁ, ମଇଁଷି, ଛେଳି, ମେଣ୍ଢା, ହରିଣ ରୋମନ୍ଥକ ଜନ୍ତୁ ।

ପୃଥିବୀର ପ୍ରାୟ ସକଳ ସ୍ଥାନରେ ଛେଳି ଦେଖାଯାଏ । ସେ ଗଛ ଲତା ବୁଦାର ପତ୍ର ଇତ୍ୟାଦି ଖାଇ ବଞ୍ଚେ । ପ୍ରାୟ ପ୍ରତ୍ୟେକ ସ୍ଥାନରେ ତାହାକୁ ଯଥେଷ୍ଟ ଆହାର ମିଳେ । ଏଣୁ ଛେଳି ପୋଷିବା ଅତି ସହଜ ।

ଛେଳିର ଚାରି ଗୋଟି ପାକସ୍ଥଳୀ ଅଛି । ପ୍ରଥମ ପାକସ୍ଥଳୀଟି ବଡ଼ । ସେ ଖାଇବା ପଦାର୍ଥ ଆଗେ ପ୍ରଥମ ପାକସ୍ଥଳୀରେ ନେଇ ଭର୍ତ୍ତି କରେ ।

ଏହା ପୂର୍ଣ୍ଣ ହେବା ପର୍ଯ୍ୟନ୍ତ ଛେଳି ଚରି ଖାଏ । ଖାଉଥିବା ପଦାର୍ଥ ପ୍ରଥମ ପାକସ୍ଥଳୀରୁ ଯାଇ ଦ୍ୱିତୀୟ ପାକସ୍ଥଳୀରେ ଗୁଳା ଗୁଳା ହୋଇ ଯାଏ । ଛେଳି ଏହି ଗୁଳା ସବୁ ତୁଣ୍ଡକୁ ନେଇ ଚୋବାଏ । ଏହାକୁ ରୋମନ୍ଥ କହାଯାଏ । ଖାଦ୍ୟ ଏଭଳି ଚର୍ବିତ ହେବା ପରେ ତୃତୀୟ ପାକସ୍ଥଳୀକୁ ଯାଏ । ସେଠାରୁ ତାହା ଚତୁର୍ଥ ପାକସ୍ଥଳୀକୁ ଯାଇ ସେଠାରେ ଜୀର୍ଣ୍ଣ ହୁଏ ।

ଛେଳି ବଡ଼ ଭୟାଳୁ ଓ ନିରୀହ ଜନ୍ତୁ । ତାହା ପାଖକୁ ମନୁଷ୍ୟ ବା ହିଂସ୍ର ଜନ୍ତୁ ନ ଯାଉଣୁ ସେ ଖାଦ୍ୟଦ୍ରବ୍ୟ ତରତର ଗିଳି ପକାଏ; ପରେ କୌଣସି ନିରାପଦ ଜାଗାକୁ ଯାଇ ରୋମନ୍ଥ କରେ ।

ତାହାର ଶିଙ୍ଗ ପଛ ଆଡ଼କୁ ଅଳ୍ପ ବଙ୍କା ହୋଇଥାଏ । ଅଣ୍ଡିରା ଛେଳିର ଲମ୍ବା ଦାଢ଼ି ଥାଏ, ମାଈ ଛେଳିର ଜମାରୁ ଦାଢ଼ି ନାହିଁ । ମାଈ ଛେଳି ଥରକେ ଦୁଇଟା ତିନି ଗୋଟି ଛୁଆ ଜନ୍ମ କରେ । ସେ ରହିବା ସ୍ଥାନରୁ ଏକ ପ୍ରକାର ଦୁର୍ଗନ୍ଧ ବାହାରେ ।

ଛେଳି ଆମର ବିଶେଷ ଉପକାର କରେ । ତାହାର ବିଷ୍ଠା ଓ ମୂତ୍ରରେ ଭୂମି ସରସ ହୁଏ । ଏଭଳି ଭୂମିରୁ ଅଧିକ ପରିମାଣରେ ଶସ୍ୟ ଜନ୍ମେ । ତାହାର ଚର୍ମ ଓ ଲୋମରେ ଯୋତା, କମ୍ବଳ ଇତ୍ୟାଦି ଜିନିଷ ତିଆରି ହୁଏ । ତାହାର ଦୁଧ ଖୁବ୍ ଉପକାରୀ । ତାହା ଖାଇଲେ ସହଜରେ ହଜମ ହୋଇଯାଏ । ଛେଳିର ବସାରେ ସାବୁନ୍, ବତି ଇତ୍ୟାଦି ପ୍ରସ୍ତୁତ କରାଯାଏ । ତିବ୍ବତ୍ ଦେଶରେ ଏକ ପ୍ରକାର ଛେଳି ଅଛି, ତାହାର ଲୋମରୁ ଉତ୍କୃଷ୍ଟ ଶାଲ ତିଆରି ହୁଏ । ଦକ୍ଷିଣ ଆମେରିକାରେ ଆଲପାକା ନାମରେ ଏକ ପ୍ରକାର ଛେଳି ଦେଖାଯାଏ; ତାହାର ଲୋମରେ ପ୍ରସିଦ୍ଧ ଆଲପାକା ବସ୍ତ୍ର ପ୍ରସ୍ତୁତ କରାଯାଏ । ଆଲପାକା ଲୁଗାରୁ ସୁନ୍ଦର ଓ ମୂଲ୍ୟବାନ୍ କୋଟ୍, ଜ୍ୟାକେଟ ଇତ୍ୟାଦି ତିଆରି କରାଯାଏ ।

ଓଡ଼ିଆ ଓ ବଙ୍ଗାଳୀ ଲୋକେ ଏବଂ ତେଲୁଗୁ ଶୂଦ୍ରମାନେ ଠାକୁରାଣୀଙ୍କ ପାଖରେ ଛାଗ ବଳି ଦେଇଥାନ୍ତି ।

ପ୍ରଶ୍ନ—ରୋମନ୍ଥକ ଜନ୍ତୁ କାହାକୁ ବୋଲାଯାଏ ?

ଛେଳି କଅଣ ଖାଏ ?

ଛେଳି ମନୁଷ୍ୟର କି ଉପକାର କରେ ?

ରୋମନ୍ଥ, ସରସ, ଚର୍ବିତ, ଜୀର୍ଣ୍ଣ, କଳୀବର, ହିଂସ୍ର, ଉତ୍କୃଷ୍ଟ, ପ୍ରସିଦ୍ଧ— ଏ ପଦମାନଙ୍କର ଅର୍ଥ ବୋଲ ।

—:o:—

## ଶୁଆ

ତୁମେମାନେ ଅବଶ୍ୟ ଶୁଆ ଦେଖିଥିବ, ଆଉ ସେ ଗୀତ ଗାଇବାର, କଥା କହିବାର ଶୁଣିଥିବ । ଶୁଆ ଗୋଟିଏ ସୁନ୍ଦର ଚତୁର ଓ ବୁଦ୍ଧିମାନ୍ ପକ୍ଷୀ । ସେ ଯାହା ଦେଖେ, ଶୁଣେ, ତାହା ସ୍ପଷ୍ଟରୂପେ ମନେ ରଖି ନିଏ । ତାହାକୁ କୌଣସି ବିଷୟ ଶିଖାଇଲେ ସେ ତାହା ଚଞ୍ଚଳ ଶିଖି ପକାଏ । ମନୁଷ୍ୟ ଯେପରି ଗାଏ ଓ କଥା କହେ, ଶୁଆ ଠିକ୍ ସେପରି ଗାଇପାରେ ଓ କହିପାରେ । ତାହାର ସ୍ୱର ଅତି ମଧୁର । ସେ ଅନେକ ସ୍ଥାନରେ ଗୃହପାଳିତ ହୋଇ ରହେ । ଏହି ସମସ୍ତ କାରଣରୁ ଲୋକେ ତାହାକୁ ବହୁ ଯତ୍ନ ଆଦରରେ ପୋଷି ରଖନ୍ତି ।

ଶୁଆ ଏକ ଶ୍ରେଷ୍ଠ ପକ୍ଷୀ । ସେ ଜଗତର ସକଳ ଉଷ୍ଣପ୍ରଧାନ ଦେଶରେ ଦେଖାଯାଏ । କେତେକ ଶୁଆ ସବୁଜବର୍ଣ୍ଣ, କେତେକ ଧୂଳିଆ ବର୍ଣ୍ଣ । କେତେକ ଶୁଆର ଡେଣା ଓ ଲାଞ୍ଜରେ ଦୀର୍ଘ ଓ ବହଳ ପର ଥାଏ; ଅଉ କେତେକ ଶୁଆର ପର ଶ୍ରେଷ୍ଠ ଓ କୋମଳ ।



ଶୁଆର ଗୋଡ଼ ଖୁବ୍ ମୋଟା ଓ ଶକ୍ତ । ତାହାର ଚାରି ଗୋଟି ଅଙ୍ଗୁଠି । ପ୍ରତ୍ୟେକ ଅଙ୍ଗୁଠି ଶେଷରେ ଗୋଟିଏ ବଙ୍କା ନଖ ଥାଏ । ଦୁଇ ଗୋଟି ଅଙ୍ଗୁଠି ଆଗକୁ ବାହାରି ଥାଏ ଏବଂ ଅନ୍ୟ ଦୁଇଟି ପଛଆଡ଼େ ବଙ୍କା ହୋଇଥାଏ । ତାହାର ଚଞ୍ଚୁ ଅତି ଦୃଢ଼, ସ୍ଥୂଳ ଓ ତୀକ୍ଷ୍ଣ । ତାହାର ଥଣ୍ଟର ଉପରଭାଗ ଓ ନିମ୍ନ ଭାଗ ଖୁବ୍ ବଙ୍କା । ଏଣୁ ଶୁଆର ଆଉ ଗୋଟିଏ ନାମ 'ବକ୍ରଚଞ୍ଚୁ' । ତାହାର ଜିଭ ଲମ୍ବା, କଅଁଳ ଓ ଚିକ୍କଣ; ଏଣୁ ସେ ସୁନ୍ଦର କଥା କହିପାରେ, ସହଜରେ ଗାଇପାରେ ।

ଶୁଆ ବଣରେ ଥିବାବେଳେ ଗଛ କୋରଡ଼ ଭିତରେ ବସା କରି ରହେ । ସେଠାରେ ସେ ନାନା ବିଧ ଫଳ ମୂଳ, କୋଳି, ମଞ୍ଜି ଇତ୍ୟାଦି ଖାଇ ବଞ୍ଚେ । ଗୃହପାଳିତ ଶୁକ ତାହା ଛଡ଼ା ରୁଟି, ଘୃତ ମଧୁ ଖାଏ । ସେ ତାହାର ଖାଦ୍ୟ ପଦାର୍ଥ କଠିନ ଚଞ୍ଚୁରେ ଭଲ କରି

ଚୋବାଇ ଚୋଷି ଖାଏ । ତାହାର ଦାନ୍ତ ନାହିଁ । ତାହାର ନଖ ଓ ଥଣ୍ଟ ବଙ୍କା ହୋଇଥିବାରୁ ସେ ତାହା ସାହାଯ୍ୟରେ ଗଛ ଚଢ଼ି ପାରେ । ଶୁଆଛୁଆ ଉଡ଼ିବାକୁ ସମର୍ଥ ହେବାଯାଏ ମାଈ ଶୁଆ ତାହାକୁ ଆହାର ଯୋଗାଏ ।

ପ୍ରଶ୍ନ:—ଉଷ୍ଣପ୍ରଧାନ, ଶଙ୍କୁ, ବଙ୍କ, ସ୍ଥୂଳ, ତୀକ୍ଷ୍ଣ, ନମ୍ର, ଚଞ୍ଚୁ, ଗୃହପାଳିତ, ଶୁକ, ସମର୍ଥ, ଯୋଗାଏ—ଏ ପଦଗୁଡ଼ିକର ଅର୍ଥ କହ ।

ଲୋକେ କାହିଁକି ଶୁଆ ପୋଷନ୍ତି ?

ଶୁଆ ତାହାର ନଖ ଓ ଚଞ୍ଚୁ ଦ୍ୱାରା କଣ କରି ପାରେ ?

## ଅଦ୍ଭୁତ ଜଳ

ଯାଦବ—ଭାଇ ଶରତ ! ଆଜି ତୁମକୁ ଗୋଟିଏ ଜଳ ବିଷୟରେ କେତେକ କଥା କହିବି । ତାହା ଅତି ଅଦ୍ଭୁତ । ପୃଥିବୀର ଅନେକ ପଦାର୍ଥ ସେଥିରେ ତରଳ ହୁଏ । ତାହା ପ୍ରତ୍ୟେକ କାମରେ ଲାଗେ ।

ଶରତ— କିଏ ସେ ଯାଦବ ? ଶୁଣିବାକୁ ମୋର ଭାରି ଇଚ୍ଛା । ତାହା କି କି କାର୍ଯ୍ୟରେ ଲୋଡ଼ା ହୁଏ ?

ଯାଦବ—ବହୁ କାର୍ଯ୍ୟରେ । ଲୋକେ ତହିଁରେ ଗଛ ଜାଣନ୍ତି, କାଠ-ଗଣ୍ଡି କରନ୍ତି । ତାହା ନ ଥିଲେ କୃଷକ ଭୂମି ଚାଷ କରି ପାରନ୍ତା ନାହିଁ, ଧାନ ବୁଣି ପାରନ୍ତା ନାହିଁ, ରୋଇ ପାରନ୍ତା ନାହିଁ କିମ୍ବା ଦାଇ ପାରନ୍ତା ନାହିଁ । ଲୋକମାନେ କେବଳ ସେହି ଜଳ ସାହାଯ୍ୟରେ ଗଛ, ଅଖୁ ଗଛ ଲଗାନ୍ତି ।

ଶରତ— ତାହା କେତେ ବଡ଼ ହେବ ଯାଦବ ?

ଯାଦବ—ପ୍ରାୟ ଆଠ ବା ଦଶ ଅଙ୍ଗୁଳ ଲମ୍ବ । ଖେଳ ହେଲେ ମଧ୍ୟ
ତାହା ସମସ୍ତ ସମୟରେ ଖୁବ୍ ଜୋରରେ କୂଅ ତଳକୁ ଖସି ଯାଇ
ପାରେ, ଅତି ଉଚ୍ଚ ଦେଉଳ ଶିଖରକୁ ଚଢ଼ି ଯାଇ ପାରେ ।

ଶରତ—ସତେ କି ଅଦ୍ଭୁତ କଳ ଭାଇ ! ଏଥି ସମ୍ବନ୍ଧରେ କେବେ
କିଛି ଶୁଣି ନ ଥିଲି । ତାହା କାଠରେ ନା ଲୁହାରେ ତିଆରି
ହୁଏ ?

ଯାଦବ—କାଠରେ ନୁହେଁ କି ଲୁହାରେ ନୁହେଁ । ତାହା କେତେ
ଗୋଟି ଭିନ୍ନ ଭିନ୍ନ ଜିନିଷରେ ପ୍ରସ୍ତୁତ । ସେହି ସମସ୍ତ ପଦାର୍ଥ
ମଧ୍ୟରୁ କେତେ ଗୋଟି ଦୃଢ଼, ଆଉ କେତୋଟି କୋମଳ ।
ତହିଁରେ ଅନେକ ଫାଶ ରହେ ।

ଶରତ—ତାହା କି ରକମ ଦେଖାଯାଏ ?

ଯାଦବ—ସେଥିରେ ୨୭ ଗୋଟି ଦୃଢ଼ ଖଣ୍ଡ ଦେଖାଯାଏ । ସେଗୁଡ଼ିକ
ଫାଶ ଦ୍ୱାରା ଦଉଡ଼ିରେ ଗୁନ୍ଥା ହୋଇଥାଏ । ଭାଇ, ଏହିଭଳି
ଏକ ଉତ୍ତମ କଳର ମୂଲ୍ୟ ଦୁଇ ହଜାର ଟଙ୍କାରୁ ଅଧିକ
ହେବ ।

ଶରତ—ଦୁଇ ହଜାର !

ଯାଦବ—ଜଣେ ମନୁଷ୍ୟଠାରେ ଭଲ କଳଟିଏ ଅଛି । ତାହାକୁ
୨୦ ହଜାର ଟଙ୍କା ଯାଚିଲେ ବି ସେ ତାହା ଦେବ ନାହିଁ ।

ଶରତ—କି ସୁନ୍ଦର, ଚମତ୍କାର ଯନ୍ତ୍ର, ଭାଇ ! ଭାଗ୍ୟବାନ୍ ଲୋକ
ପାଖରେ ଏଭଳି ଜିନିଷ ରହି ପାରେ ସିନା !

ଯାଦବ—ନିଶ୍ଚୟ; କିନ୍ତୁ ତାହା ଭଲ କାର୍ଯ୍ୟରେ ଲଗାଇଲେ ତ । କିଛି
ଲୋକ ଏ କଳ ଦ୍ୱାରା ବଞ୍ଚନ୍ତି । ଏହା ସାହାଯ୍ୟରେ ଯେପରି
ଉପାର୍ଜନ ହୁଏ, ଅନ୍ୟ କୌଣସି ଉପାୟରେ ସେପରି ହୋଇ...

ନ ପାରେ । ଏହି କଳ ନ ଥିଲେ, ଲୋକେ ରାଜାଙ୍କର ଅଟ୍ଟାଳିକା ଏବଂ ବଡ଼ ବଡ଼ ଘରମାନ କିମ୍ବା ସେଥିରେ ଥିବା ଜିନିଷ ସବୁ ତିଆରି କରି ପାରି ନ ଥାନ୍ତେ । ତା ସାହାଯ୍ୟ ବିନା ଛୁରି, କଳା ବା କୃଷି ପ୍ରସ୍ତୁତ ହୋଇ ନ ପାରେ, ଡାକଘରର ଚଳ ନ ପାରେ ।

ଶରତ—ଦେଖୁଛି, ଏହା ଭଳି ବଢ଼େଇର ହାତିଆର କାମ କରି ପାରିବ ନାହିଁ । କେବଳ ଧନୀଠାରେ ଏହି କଳ ରହିବାର କଥା । ଦରିଦ୍ର ଏହା ପାଇବ କିପରି ?

ଯାଦବ—ଏହା କଣ କହୁଛ ? ଅତି ଗରିବ ଲୋକମାନଙ୍କ ପାଖରେ ମଧ୍ୟ ସେହି କଳ ଅଛି ।

ଶରତ—ମଲା, ଗରିବ ଲୋକେ ତାହା ପାଇବେ କିପରି ? ଭାଇ, ଧନ ମିଳିଲେ ମୁଁ ଗୋଟାଏ ସେପରି କିଣନ୍ତି ।

ଯାଦବ—ତୁମ ପାଖରେ ତ ସେଭଳି ଦୁଇଟି କଳ ଅଛି । ପ୍ରତ୍ୟେକ ପୁରୁଷ, ସ୍ତ୍ରୀ, ବାଳକ ଓ ବୃଦ୍ଧର ଦୁଇଟି ଲେଖାଏ ଅଛି । ଏବେ ତୁମ ଅଙ୍ଗୀ ପକେଟ୍‌ରେ ନିଶ୍ଚୟ ଗୋଟିଏ ଅଛି ।

ଶରତ—ମୋ ପକେଟ୍‌ର ବାହାର ଭିତର ଖୋଜି ଦେଖି ପାରି । କାହିଁ, ସେଥିରେ ମୋ ହାତ, ଖଣ୍ଡିଏ ଛୁରି ଓ କଲମ ଛଡ଼ା ତ ଆଉ କିଛି ନାହିଁ ।

ଯାଦବ—ମୁଁ ଏତେ ବେଳ ପର୍ଯ୍ୟନ୍ତ ଯେଉଁ କଳ ସମ୍ବନ୍ଧରେ କହୁ ଅଛି, ସେହି ହାତହିଁ ସେଇ କଳ । ବୁଝିଲ ?

ଶରତ—ମନୁଷ୍ୟର ହାତ ? ତା ମୂଲ୍ୟ କଣ ଦୁଇ ହଜାରରୁ ଅଧିକ ବୋଲି କହିଲ !

ଯାଦବ—ହିଁ ଠିକ୍ କହୁଛୁ । ଶହ ହଜାର ଟଙ୍କା ଦେଲେ ମଧ୍ୟ ତୁମ
ହାତଟି ଅନ୍ୟ କାହାକୁ ଦେଇ ପାରିବ ? ହାତଟି ହରାଇ
ଶହ ହଜାର ଖର୍ଚ୍ଚ କଲେ ବି ତାହା ଫେରି ପାଇ ପାରିବ
ନାହିଁ । ପାଇ ପାରିବ ତ ?

ଶରତ—କହୁଛି, ତାହା ଦେଖିଲ ଅଙ୍ଗୁଳି ଉଠି ପାରେ ।

ଯାଦବ—ନିଶ୍ଚୟ । ମନୁଷ୍ୟର ହାତ ଦେଖିଲ ଶିଖରରେ ଯାଇ ବାନା
ପୋତି ପାରେ । ନୁହେ ?

ଶରତ—ମାତ୍ର ତାହା ୨୭ ଗୋଟି ଦୃଢ଼ ଖଣ୍ଡରେ ପ୍ରସ୍ତୁତ ବୋଲି
କହିବାର ଅର୍ଥ ?

ଯାଦବ—ହାତରେ ୨୭ ଖଣ୍ଡ ଅସ୍ଥି ଅଛି । ମୁଁ ସେତିକି ଯାଏ କଥା
କହୁଛି, ଯେ ସମସ୍ତ ହାତର ଗଣ୍ଠି । ଅନେକ ଛିଦ୍ର ଅସ୍ଥିଗୁଡ଼ିକ
ଏକତ୍ର ରଖିଛି । ମାଂସ ସେହି ସମସ୍ତ ଯୋଡ଼ାଇ ରଖିଛି । ମାଂସ
ବଡ଼ କୋମଳ ପଦାର୍ଥ । ମନୁଷ୍ୟର ହାତ ବଡ଼ ଉପକାରରେ
ଆସିବା ଜିନିଷ । ଏହା ବୁଝି ଈଶ୍ୱର ଆମ୍ଭମାନଙ୍କୁ ହାତ
ଦେଇଛନ୍ତି । ସେଥିପାଇଁ ତାଙ୍କର ପ୍ରଶଂସା ଗାଇବାକୁ ହେବ ।
ସର୍ବଦା ଉତ୍ତମ କାର୍ଯ୍ୟରେ ହାତ ଦେଲେ ଭଗବାନ ଆମ୍ଭ-
ମାନଙ୍କୁ ଆଦର କରିବେ, ସୁଖ ଦେବେ । ଆସ ଭାଇ
ଲୋକଙ୍କ ମଙ୍ଗଳ ନିମନ୍ତେ ହସ୍ତ ବ୍ୟବହାର କରିବା ।

ପ୍ରଶ୍ନ— ହାତରେ କି କି କାର୍ଯ୍ୟ ହୁଏ ?
ପ୍ରସ୍ତୁତ, ଦୃଢ଼, କୋମଳ, ଶିଖର, ଅଟ୍ଟାଳିକା, ଅସ୍ଥି,
ବ୍ୟବହାର, ମହିମା—ଏ ଶବ୍ଦଗୁଡ଼ିକର ଅର୍ଥ କଣ ?



# ବିଲୁଆର ସନ୍ତୋଷ

ଦିନକରେ ଗୋଟାଏ ଖରା ହୋଇଥିଲା । ସେ ଦିନ କୌଣସି ଏକ ବିଲୁଆ ଗୋଟିଏ ପୋଖରୀକୁ ଯାଇ ସେଠାରେ ମାଛଟିଏ ଦେଖିଲା । ବିଲୁଆ ଭାବିଲା—'ଆହା, ଦିନଟାଯାକ ଏ ପୋଖରୀ ଭିତରେ ରହିଲେ ମୋତେ ବଡ଼ ସୁଖ ଲାଗନ୍ତା । ଏବେ ବଡ଼ ଗରମ ବୋଧ ହେଉଛି । ଜଳରେ ବୁଡ଼ି ରହିଲେ ଖୁବ୍ ଥଣ୍ଡା ଲାଗନ୍ତା ।'

ମାଛଟି ପାଣିରେ ଅତି ଆନନ୍ଦରେ ପହଁରୁଥିଲା । ବିଲୁଆ ତାହା ଆଡ଼କୁ ଆଉ ଚାହିଁଲା ନାହିଁ, ମାତ୍ର ଆଖି ବୁଜି ହୁଡ଼ାର ଘାସ ଉପରେ ଶୋଇ ପଡ଼ିଲା ।

ମାଛ ଭାବିଲା—'ଆହା, ବିଲୁଆ ପରି କଅଁଳ ଘାସରେ ଶୋଇ ରହିଲେ ବଡ଼ ଭଲ ଲାଗନ୍ତା । ବିଲୁଆ ବଡ଼ ସୁଖୀ । ସେହି ସ୍ଥାନ ଅତି ସୁନ୍ଦର ଦିଶୁଛି, ଆଉ ସେଠାରେ ଶୋଇଲେ ଗରମ ବୋଧ ହେବ ।' ବିଲୁଆ ମାଛର ଏ କଥା ଶୁଣି ପାରିଲା ।

ପରେ ବିଲୁଆ ଉଠି ବସିଲା । ଯେଉଁ ବାଟରେ ସେ ପୋଖରୀକୁ ଯାଇଥିଲା, ସେହି ବାଟରେ ବାହୁଡ଼ିଲା । ଯାଉଁ ଯାଉଁ ସେ ବାଟରେ ଗୋଟିଏ ପକ୍ଷୀ ଦେଖିଲା ।

ପକ୍ଷୀ କହିଲା, 'ଦିନଟାଯାକ ଯଦି ସେହି ବିଲୁଆ ପରି ଖେଳନ୍ତି, ତାହାହେଲେ ମୁଁ ଢେର ଆନନ୍ଦ ଲାଭ କରନ୍ତି । ଆହା, ବିଲୁଆଟି କି ସୁଖରେ କାଳ କଟାଉଛି ! ମୁଁ ମୋର ବସା ନିର୍ମାଣ କରି କ୍ଳାନ୍ତ ହୋଇଯାଏଁ, ମୋ ଡେଣା ଦିଓଟି ଦୁର୍ବଳ ହୋଇଯାଏ । ପ୍ରତିଦିନ ଏଣେ ତେଣେ ଉଡ଼ି ଯାଇ ବସା ପାଇଁ ଘାସ, ଡାଙ୍ଗ, କାଠି, କୁଟା ଆଣିବାକୁ ହୁଏ । ଧିକ୍ ମୋ ଜୀବନ !'



ବଲୁଆ ପକ୍ଷିର କଥା ମଧ ଶୁଣିଲା । ପରେ ସେ ତାହାର ଗାଈ ଭଉଣୀଙ୍କୁ ଯାଇ କହିଲା — 'ମୁଁ ଦୁଃଖ ସନ୍ତୋଷରେ ରହେଁ ବୋଲି ଭାବି ମାଛ ଓ ପକ୍ଷୀ ମୋ ପ୍ରତି ଈର୍ଷା କରୁଛନ୍ତି । ମୁଁ ଏବେ ଯେପରି ଜୀବନ କଟାଉଛି, ସେଥିରେ ସନ୍ତୋଷ ଲାଭ କରିବା ଉଚିତ । ଏଣୁ ଆଜିଠାରୁ ନିଜ ଭାଗ୍ୟରେ ତୃପ୍ତ ହୋଇ ରହିବି ।'

ଈଶ୍ୱର ଯାହା କରନ୍ତି ଏବଂ ଆମ୍ଭମାନଙ୍କୁ ଯାହା ଦିଅନ୍ତି, ତାହା କେବଳ ମଙ୍ଗଳ ନିମନ୍ତେ ।

ପ୍ରଶ୍ନ — ବଲୁଆଠାରୁ କଣ ଶିଖିଲ ?

ମାଛ ବଲୁଅକୁ ଦେଖି କଣ କହିଲା ?

ସନ୍ତୋଷ ବୋଇଲେ କଣ ?

ଢେଉ, ଜର୍ମାଣ, କ୍ଲାନ୍ତ, ଈର୍ଷା, ଭାଗ୍ୟ, ତୃପ୍ତ — ଏ ପଦଗୁଡ଼ିକର ଅର୍ଥ ଲେଖ ।

---

## ମାଙ୍କଡ଼



ମର୍କଟ ଗୋଟିଏ ଅସୁନ୍ଦର ଚତୁଷ୍ପଦ ଜନ୍ତୁ । ଏହାର ପାଦ ହାତ ଭଳି କାର୍ଯ୍ୟ କରେ । ସେ ପାଦ ଓ ଲାଙ୍ଗୁଳ ସାହାଯ୍ୟରେ ଗଛ ଡାଳ ଖୁବ୍ ଆଣ୍ଠି କରି ଭିଡ଼ି ଧରେ । କେହି କେହି ମାଙ୍କଡ଼କୁ ଚତୁଷ୍ପଦ ପଶୁ ନ କହି ଚତୁର୍ଭୁଜ ପଶୁ ବୋଲି କହିଥାନ୍ତି । ଏହାକୁ 'ଶାଖାମୃଗ' ମଧ୍ୟ କୁହାଯାଏ ।

ଆମ ଦେଶରେ ଦୁଇ ପ୍ରକାର ମର୍କଟ ଦେଖାଯାନ୍ତି—ପାଉଁ ଓ ଗୋଲଣ୍ଡା । କାଳମୁହାଁ ମାଙ୍କଡ଼କୁ ପାଉଁ କୁହାଯାଏ । ଗୋଲଣ୍ଡାର ମୁହଁ ଅତି ହାତପାପୁଲି କୃଷ୍ଣବର୍ଣ୍ଣ । ମାଙ୍କଡ଼ ଗଛରେ ରହେ । ପକ୍ଷୀ ଯେପରି ଶୂନ୍ୟରେ ଉଡ଼ି ପାରେ, ବାନର ବୃକ୍ଷଶାଖାରେ ସେହିପରି ଆନନ୍ଦରେ ବାସ କରି ପାରେ ଏବଂ ଖେଳେ, ଡେଏଁ । ଫଳମୂଳ ଏହାର ପ୍ରଧାନ ଖାଦ୍ୟ । ସୁବିଧା ପାଇଲେ ସେ ଚାଉଳ, ଗହମ ବି ଖାଇଥାଏ ।

ମାଙ୍କଡ଼ ମନୁଷ୍ୟ ଦ୍ୱାରା ପାଳିତ ହୁଏ । କେତେକ ଦରିଦ୍ର ଲୋକ ମାଙ୍କଡ଼କୁ ନାଟ ଖେଳ ଶିଖାଇ ତାହା ଦ୍ୱାରା ରୋଜଗାର କରିଥାନ୍ତି । ମାଙ୍କଡ଼ର ଖେଳ କୌତୁକ ଅତି ଅଦ୍ଭୁତ; ତାହା ଦେଖିଲେ ହସ ମାଡ଼େ । ମାଙ୍କଡ଼ ଭାରି ଅନୁକରଣପ୍ରିୟ । ମନୁଷ୍ୟ ଯାହା କରେ, ସେ ତାହା ଦେଖି ଶିଖି ନିଏ ଏବଂ ଠିକ୍ ମନୁଷ୍ୟ ପରି କାମ କରେ । ସେ ମନୁଷ୍ୟ ଭଳି ବସିବାକୁ ଅଛି କାର୍ଯ୍ୟ-ଇତ୍ୟାଦିକୁ ତାହାକୁ ଅର୍ଦ୍ଧମନୁଷ୍ୟ ଓ ଅର୍ଦ୍ଧପଶୁ ବୋଲାଯାଏ ।

ମାଙ୍କଡ଼ର ଅନୁକରଣ-ବୃତ୍ତିର ଗୋଟିଏ ଗଳ୍ପ ଶୁଣ । ଜଣେ ବ୍ରାହ୍ମଣ ପ୍ରତିଦିନ ନଦୀତଟରେ ବସି ଦାନ୍ତ ଘଷୁଥାନ୍ତି । ସେତେବେଳେ କେତେକ ମାଙ୍କଡ଼ ଗଛଡାଳରେ ବସି ଏହା ଦେଖୁଥାନ୍ତି । ପ୍ରତ୍ୟହ ଏହା ଦେଖି ଦେଖି ସେମାନେ ଭାବିଲେ ଯେ, ଦାନ୍ତଘଷା ଗୋଟିଏ ଭଲ କାର୍ଯ୍ୟ । ଏଣୁ ସେମାନେ ପରଦିନଠାରୁ ପ୍ରତ୍ୟେକେ ଖଣ୍ଡିଏ ଖଣ୍ଡିଏ ଦାନ୍ତକାଠି ଧରି ନଦୀତଟରେ ବସି ଦାନ୍ତ ଘଷିବାକୁ ଲାଗିଲେ ।

ମାଙ୍କଡ଼ ଅତି ଚତୁର ଓ ଧୂର୍ତ୍ତ । ଦୁଷ୍ଟାମି କରି ସେ ଖୁବ୍ ଆନନ୍ଦ ପାଏ । ଗଛ ଛେଲି ଭିତରେ କାଠ ପତଙ୍ଗ ଥିବାର ଦେଖିଲେ, ମାଙ୍କଡ଼ ସେଠାରେ ଯୋଡ଼ି କରି ସେମାନଙ୍କ ପଦାକୁ କାଢ଼ି ପକାଏ । ସେ

କେବେ କେବେ ହଠାତ୍ ଘରେ ପଶି ଖାଦ୍ୟ ପଦାର୍ଥ ବା ଛାଲ ଲୁଗା ଇତ୍ୟାଦି ଛଡ଼ାଇ ନେଇଯାଏ । ଛୋଟ ପିଲା ବା ସ୍ତ୍ରୀକୁ ଏକୁଟିଆ ଦେଖିଲେ, ସେ ଦାନ୍ତ ଦେଖାଇ ଖତେଇ ହୁଏ ଏବଂ ଭୟ ଦେଖାଇବା ପାଇଁ କେବେ କେବେ ଖେଦି ନିଏ, ମାତ୍ର କାମୁଡ଼ା କାମୁଡ଼ି କରେ ନାହିଁ । ଅଧିକ ବୟସର ଲୋକଙ୍କୁ ଦେଖିବା ମାତ୍ରେ ମାଙ୍କଡ଼ ଭୟ ପାଏ । ବାଧା ନ ପାଇଲେ ସେ କେବେ କାହାକୁ ଆକ୍ରମଣ କରେ ନାହିଁ ।

ପ୍ରଶ୍ନ—ମାଙ୍କଡ଼କୁ ଅର୍ଦ୍ଧମନୁଷ୍ୟ କୁହାଯାଏ କାହିଁକି ?

କେହି କେହି ତାହାକୁ ଚତୁର୍ଭୁଜ ଜନ୍ତୁ ବୋଲି କାହିଁକି କହନ୍ତି ?

ମାଙ୍କଡ଼ର ଅନୁକରଣପ୍ରିୟତା ସମ୍ବନ୍ଧରେ ଆଉ କି ଗଳ୍ପ ଜାଣ ?

ଚତୁଷ୍ପଦ, ଚତୁର୍ଭୁଜ, ଶାଖାମୃଗ, ରୋଜଗାର, ଅନୁକରଣପ୍ରିୟ, ଧୂର୍ତ୍ତ, ଆକ୍ରମଣ—ଏ ପଦମାନଙ୍କର ଅର୍ଥ ବୋଲ ।

## ଚତୁର ବିଗୃହପତି

ଥରେ ଜଣେ ମହାଜନର ଗୋଟିଏ ବଡ଼ ସିନ୍ଦୁକ ଚୋରି ଗଲା । ତହିଁରେ ଅନେକ ନୋଟ, ଟଙ୍କା ଓ ଅଳଙ୍କାର ଥିଲା । ମହାଜନ ବହୁ ଚେଷ୍ଟା କରି ମଧ୍ୟ ସିନ୍ଦୁକଟି ପାଇ ପାରିଲା ନାହିଁ । ଶେଷରେ ସେ ବିଗୃହପତିଙ୍କ ନିକଟରେ ଏହି ବିଷୟ ଜଣାଇଲା ।

ବିଗୃହପତି ଅତି ଚତୁର ଓ ବୁଦ୍ଧିମାନ୍ ଲୋକ ଥିଲେ । ସେ ମହାଜନର ଚାକରମାନଙ୍କୁ ବିଗୃହାଳୟକୁ ଡକାଇଲେ । ସେମାନେ ଆସିବାକ୍ଷଣି ବିଗୃହପତି ପ୍ରତ୍ୟେକ ଚାକରକୁ ସମାନ ଲମ୍ବ ହୋଇଥିବା ଗୋଟିଏ ଗୋଟିଏ ବେତ ଦେଇ କହିଲେ,—'ଦେଖ, ମହାଜନର ସିନ୍ଦୁକ ଯାହା ପାଖରେ ଅଛି, ତାହାର ବେତଟି କାଲି ଚାରି ଅଙ୍ଗୁଳି ବଢ଼ିଯିବ । ସେ

ନିର୍ଦୋଷ,ତାହାର ବେତ ଯେପରି ଅଛି, ସେହିପରି ରହିବ। କାଲି ତୁମେମାନେ ପୁନର୍ବାର ଏଠାକୁ ଆସିବ।'ଏହା କହି ସେ ଶିକାରିମାନଙ୍କୁ ବିଦାୟ ଦେଲେ।

ଯେଉଁ ଶିକାରି ମହାଜନର ସିନ୍ଦୁକ ଚୋରି କରିଥିଲା, ସେ ଭୟରେ ଥରିଲା। ସେ ଭାରି ଚିନ୍ତିତ ହୋଇ ଭାବିଲା, 'କରିବି କଣ ? କାଲି ତ ନିଶ୍ଚୟ ଧରା ପଡ଼ିବି। ବିଚାରପତି ଅବଶ୍ୟ ମୋତେ ଜେଲ୍ ଦେବେ। କି ଉପାୟରେ ଏ ବିପଦରୁ ଉଦ୍ଧାର ପାଇବି ?' ପରେ ସେ ଈଶ୍ୱରଙ୍କୁ ମନେ ମନେ ଡ଼ାକି କହିଲା,'ହେ ଈଶ୍ୱର, ମୋତେ ରକ୍ଷା କର, ସହାୟ ହୁଅ।'

ମାତ୍ର ଈଶ୍ୱର ତା ଡ଼ାକ ଶୁଣିଲେ କି ? ନାହିଁ। କାରଣ, ସେ ଚୋରକୁ ସାହାଯ୍ୟ କରନ୍ତି ନାହିଁ।

ବେତଟି ଦୁଇ ଆଙ୍ଗୁଳ ବଢ଼ିଗଲେ ଦଣ୍ଡ ଥିଆ ହେବାକୁ ହେବ ଶିକାରର ଭାବି ଭୟରେ କମ୍ପିଲା। ସେ ନିଜ ବେତରୁ ଦୁଇ ଆଙ୍ଗୁଳ କାଟି, ତାକୁ ଛୋଟ କରି ଦେଲା କିନ୍ତୁ ଅନ୍ୟ ଶିକାରିମାନେ ସେମାନଙ୍କର ବେତଗୁଡ଼ିକ ଛୋଟ କଲେ ନାହିଁ କି ବଢ଼ାଇଲେ ନାହିଁ। କାରଣ ସେମାନେ ନିର୍ଦୋଷ। ଏହି କାରଣରୁ ସେମାନଙ୍କର ମନରେ କିଛି ଭୟ ନ ଥିଲା।

ତହିଁ ଆର ଦିନ ଶିକାରିମାନେ ସେମାନଙ୍କ ବେତ ଧରି ବିଚାରାଳୟକୁ ଗଲେ। ବିଚାରପତି ଜଣକର ଛୋଟ ବେତ ଦେଖି ସେ ପ୍ରକୃତରେ ସିନ୍ଦୁକ ଚୋରି କରିଥିବାର ବୁଝି ପାରିଲେ। ପାପ ତ କେବେ ଲୁଚି ରହେ ନାହିଁ। ମହାଜନକୁ ସିନ୍ଦୁକଟି ଶୀଘ୍ର ଫେରାଇଦେବା ନିମିତ୍ତ

ବିଶ୍ୱରପତି ସେହି ଗୃହ୍ନଙ୍କୁ ଆଦେଶ ଦେଲେ ଏବଂ ତାହାଙ୍କୁ ଛଅ ମାସ କାଳ ଜେଲ୍‌ରେ ରଖିଲେ ।

ଚୋର କରିବା ମହା ପାପ । ଈଶ୍ୱର ଚୋର ପ୍ରତି ଅସନ୍ତୁଷ୍ଟ ହୁଅନ୍ତି । ଚୋର କଷ୍ଟସୂ ଦଣ୍ଡ ପାଏ ।

ପ୍ରଶ୍ନ— ମହାଜନ ତା ସିନ୍ଦୁକଟି ଫେର ପାଇଲା କିପରି ?
ଚୋର ଗୃହର ନାଳ ବେତଟି ଛୋଟ କରିପକାଇଲା କାହିଁକି ?
ଏହି ଗଳ୍ପ ତୁମ୍ଭମାନଙ୍କୁ କି ଶିକ୍ଷା ଦେଉଛି ?
ଈଶ୍ୱର ନ ଦେଖିବା କଥା କିଛି ଅଛି କି ?
ବିଶ୍ୱରପତି, ବିଚାରାଳୟ, ପୁନର୍ବାର, ନିର୍ଦ୍ଦୋଷ—ଏ ଶବ୍ଦମାନଙ୍କର ଅର୍ଥ କହ ।

---

## ଗଛ

ଯାହା ମାଟି ଭେଦ କରି ଉପରକୁ ଉଠେ, ତାହା ଉଦ୍ଭିଦ । ଉଦ୍ଭିଦ ପ୍ରଧାନରେ ଚାରି ପ୍ରକାର—ଗଛ, ଲତା, ବୁଦା ଓ ଘାସ । ଆମ୍ବ, ନଡ଼ିଆ, ପଣସ, ଅଶ୍ୱତ୍ଥ, ବଟ—ଏ ସବୁ ଗଛ । ଲାଉ, କଖାରୁ, ମାଳତୀ, ଜହି—ଏ ସମସ୍ତ ଲତା । ମଲ୍ଲୀ, ଯୂଈ, ଗୋଲାପ, କନିଅର, ବାଇଗଣ, ଗୋଲାପ—ଏହି ସକଳ ବୁଦା ବା ଗୁଳ୍ମ । ମୁଥା, ଦୂବ, କେଉଟିଆ, ଧନ୍ୱନ୍ତରୀ—ଏଗୁଡ଼ିକ ଘାସ । ଏହି ପାଠରେ କେବଳ ଗଛ ସମ୍ବନ୍ଧରେ କେତେକ କଥା କୁହାଯିବ ।



ଜନ୍ତୁମାନେ ଗୋଟିଏ ସ୍ଥାନରୁ ଅନ୍ୟ ଏକ ସ୍ଥାନକୁ ଚାଲି ଯାଇ ପାରନ୍ତି କିନ୍ତୁ ବୃକ୍ଷ ଏଣେ ତେଣେ ଚାଲି ବୁଲି ଯାଇ ନ ପାରେ । ତାହା ଯେଉଁ ସ୍ଥାନରେ ଜାତ ହୁଏ ସେହି ସ୍ଥଳରେହିଁ ରହେ ।

ଆମ୍ଭମାନଙ୍କ ପରି ବୃକ୍ଷର ମଧ୍ୟ କେତେଗୁଡ଼ିଏ ଅଙ୍ଗ ଅଛି— ଚେର, ଗଣ୍ଡି, ଶାଖା, ପତ୍ର ଓ ଫୁଲ । ଚେର ବା ମୂଳ ମାଟି ଭିତରେ ରହେ ଏବଂ ବୃକ୍ଷକୁ ଦୃଢ଼ ଭାବରେ ଧରି ରଖେ । ବୃକ୍ଷର ମଧ୍ୟଭାଗକୁ କାଣ୍ଡ ବା ଗଣ୍ଡି କହାଯାଏ । ପତ୍ର ଡାଳରୁ ବାହାରି ଗଛକୁ ଶୋଭା ଦିଏ । ପତ୍ରକୁ ବୃକ୍ଷର ଉପରଭାଗ ବୋଲି ଯାଇପାରେ ।

କେତେକ ଗଛର ଡାଳ ଥାଏ, ଆଉ କେତେକର ଆଦୌ ନ ଥାଏ । ଆମ୍ବଗଛର ଗଣ୍ଡିରେ ଶାଖା ଥାଏ । କିନ୍ତୁ ଗୁଆଗଛରେ ରହେ ନାହିଁ ।

ଫୁଲରୁ ଫଳ ଜନ୍ମେ; ଫଳ ଭିତରେ ବୀଜ ଥାଏ । ପ୍ରତ୍ୟେକ ବୃକ୍ଷର ମୂଳ, କାଣ୍ଡ ଓ ପତ୍ର ଅଛି । ଫୁଲ, ଫଳ ଓ ବୀଜ ବିନା ବୃକ୍ଷ ହୋଇପାରେ, କିନ୍ତୁ ଚେର, ଗଣ୍ଡି ଓ ପତ୍ର ନ ଥାଇ ଗଛ ନାହିଁ ।

ଆମ୍ଭମାନଙ୍କ ପରି ବୃକ୍ଷର ବି ଜୀବନ ଅଛି । ଜନ୍ତୁ ଭଳି ବୃକ୍ଷ ବି ଜନ୍ମେ, ବଢ଼େ ଏବଂ ଶେଷରେ ମରେ । ଡିମ୍ବରୁ ଯେପରି ପକ୍ଷୀର ଜନ୍ମ ହୁଏ, ବୀଜରୁ ଗଛ ମଧ୍ୟ ସେହିପରି ଜନ୍ମେ । ଆମ୍ଭମାନଙ୍କର ଯେପରି ଜଳ, ବାୟୁ, ଆଲୋକ ଓ ଆହାର ଲୋଡ଼ା, ଗଛର ବି ସେହିପରି ଲୋଡ଼ା । ଜନ୍ତୁ ଆହାର ବିନା ବଞ୍ଚି ରହି ପାରେ ନାହିଁ, ବୃକ୍ଷ ମଧ୍ୟ ଆହାର ନ ପାଇଲେ ଶୁଖି ମରିଯାଏ ।

ଅନେକ ପ୍ରକାର ବୃକ୍ଷ ଦେଖାଯାଏ । ସେଥି ମଧ୍ୟରୁ କେତେକ ବଡ଼, କେତେକ ଛୋଟ, କେତେକ କଠିନ ଏବଂ କେତେକ କୋମଳ । କେତେକ ଗଛର ଗଣ୍ଡି ଏତେ ଦୃଢ଼ ଯେ, ସେଗୁଡ଼ିକ କୁରାଢ଼ି ବିନା ହଣା ଯାଇ ନ ପାରେ । କେତେକ ଗଛର ଗଣ୍ଡି ଏପରି କୋମଳ ଯେ, ସେହି ସମସ୍ତ ନଖଦ୍ୱାରା ସହଜରେ ଛିଣ୍ଡାଇ ଦିଆ ଯାଇପାରେ । ଫୁଲ, ଫଳ ଓ ପତ୍ର ମଧ୍ୟ ନାନାବିଧ । ଜଳ ମଧ୍ୟରେ ବି ଅନେକ ପ୍ରକାର ବୃକ୍ଷ ଦେଖିବାକୁ ପାଉଁ ।

ଗଛ ଆମ୍ଭମାନଙ୍କର ବହୁତ ଉପକାର କରେ । ତାହା ଆମ୍ଭମାନଙ୍କୁ ଅଧିକାଂଶ ଖାଦ୍ୟ ଦ୍ରବ୍ୟ ଦିଏ । କପାଗଛରେ ତୁଳା ଜାତ ହୁଏ, ତୁଳାରୁ ଲୁଗା ତିଆରି ହୁଏ । ବୃକ୍ଷରୁ ନାନା ରକମ ଔଷଧ ପାଉଁ । ଝୁଙ୍କି, କୋଣ୍ଡି, ଔଷଧ, କବାଟ, ପଟା ଇତ୍ୟାଦି ଗଛ ଗଣ୍ଡିରେ ତିଆରି ହୁଏ । ଏହି ସମସ୍ତ ପଦାର୍ଥ ଘର ତିଆରିରେ ଲାଗେ । ବୃକ୍ଷ ମନୁଷ୍ୟକୁ ଶୀତଳ ଛାୟା ଆଉ ବିଶୁଦ୍ଧ ବାୟୁ ଦିଏ । ତୁମେମାନେ ବୃକ୍ଷ ସମ୍ବନ୍ଧରେ କ୍ରମେ ଅଧିକ ଜାଣିବ ।

ପ୍ରଶ୍ନ— ବୃକ୍ଷର କେତେ ଗୋଟି ଅଙ୍ଗ ?

ତୁମ ଘରେ ଯେଉଁ ସବୁ ଫଳ ତରକାରି କରି ଖାଅ ସେଗୁଡ଼ିକ କେଉଁ ଉଦ୍ଭିଦରୁ ଆସେ ?

ଗଛ ଆମ୍ଭମାନଙ୍କର କି ଉପକାର କରେ ?

ଉଦ୍ଭିଦ, କାଣ୍ଡ, ଶାଖା, କଠିନ, ଅଧିକାଂଶ, ବିଶୁଦ୍ଧ— ଏଗୁଡ଼ିକର ଅର୍ଥ ଲେଖ ।



# ବୁଦ୍ଧି ଯାର ବଳତାର

ଏକ ସମୟରେ କୌଣସି ଏକ ବନରେ ଗୋଟିଏ ବଡ଼ ସିଂହ ବାସ କରୁଥିଲା । ସେ ବନ୍ୟ ପଶୁମାନଙ୍କର ରାଜା । ସେ ପ୍ରତି ଦିନ ଅନେକଗୁଡ଼ିଏ ପଶୁ ମାରି ଖାଉଥାଏ । ଦିନେ ବନର ସକଳ ପଶୁ ତାହା ନିକଟକୁ ଯାଇ କହିଲେ—'ମହାରାଜ, ଆପଣ ଏକାବେଳକେ ବହୁ ପଶୁ ମାରନ୍ତୁ ନାହିଁ । ଆମେମାନେ ଆପଣଙ୍କୁ ପ୍ରତ୍ୟହ ଗୋଟିଏ ଲେଖାଏଁ ପଶୁ ଭେଟି ଦେବୁ ।'

ସିଂହ ସେମାନଙ୍କ କଥା ରଖିଲା । ସେହି ଦିନଠାରୁ ସେ ପ୍ରତିଦିନ ଗୋଟିଏ ଲେଖାଏଁ ପଶୁ ଉପହାର ପାଇ ଖାଇବାକୁ ଲାଗିଲା ।

ଦିନେ ସିଂହ ପାଖକୁ ଗୋଟିଏ ବୁଢ଼ା ଶଶକକୁ ଯିବାକୁ ହେଲା । ଶଶକଟି ବଡ଼ ଚତୁର । ସେ ସେହି ଦିନ ସିଂହ ନିକଟକୁ କିଛି ବିଳମ୍ବ କରି ଗଲା । ଠିକ ଭୋଜନ ବେଳେ କୌଣସି ପଶୁ ନ ପାଇ ସିଂହ କ୍ରୋଧରେ ଗର୍ଜନ କରି ଉଠିଲା । ସେତିକିବେଳେ ଶଶକ ତା ପାଖରେ ଯାଇ ପହଞ୍ଚିଲା । ବିଳମ୍ବ ହେବାର କାରଣ ପଚାରିବାରୁ ଶଶକ କହିଲା, 'ମହାରାଜ, ମୋର କିଛି ଦୋଷ ନାହିଁ । ମୁଁ ଆପଣଙ୍କ ଠାକୁ ଆସିବା ବେଳେ ବାଟରେ ଆଉ ଗୋଟିଏ ସିଂହ ମୋତେ ଧରି ଖାଇ ଦେବାକୁ ବସିଲା । ମୁଁ ଏଠାକୁ ଆସିବା ପରେ ତା ନିକଟକୁ ପୁନର୍ବାର ଯିବି ବୋଲି କହିବାରୁ ସେ ମୋତେ ଛାଡ଼ିଲା । ଏଣୁ ଆସିବାର ବିଳମ୍ବ ଘଟିଛି ।'

ଏହା ଶୁଣି ସିଂହ ରାଗରେ ଜଳିଗଲା । କହିଲା, 'କେଉଁଠି ଅଛି ସେହି ଦୁଷ୍ଟ ସିଂହ? ମୋତେ ସଙ୍ଗରେ ନେଇ ଦେଖାଅ ।' ଶଶକ ସିଂହକୁ ସଙ୍ଗରେ ଧରି ଗୋଟିଏ କୂପ ନିକଟରେ ଯାଇ ପହଞ୍ଚିଲା ।



ସେଠାରେ ଶଶକ କହିଲା,—'ମହାରାଜ, ସେହି ଦୁଷ୍ଟ ସିଂହଟି ଏ କୂଅ ଭିତରେ ଅଛି, ଦେଖନ୍ତୁ ।' ସିଂହ ସେହିକ୍ଷଣି କୂପ ମଧ୍ୟକୁ ଅନାଇଲା । ଜଳରେ ନିଜର ପ୍ରତିବିମ୍ବ ଦେଖି ସେ ଭାବିଲା ଯେ, ଭିତରେ ଅନ୍ୟ ସିଂହଟି ଅଛି । ସେ ବଡ଼ କ୍ରୋଧରେ କୂପ ମଧ୍ୟକୁ ଡେଇଁ ପଡ଼ି ପ୍ରାଣ ହରାଇଲା । ଶଶକ ଅତି ଆନନ୍ଦରେ ସେଠାରୁ ଚାଲିଗଲା ।

ପ୍ରଶ୍ନ—

ଏ ଗଳ୍ପଟି ତୁମ ନିଜ ଭାଷାରେ ଲେଖ ।

ବନ୍ୟ, ପଶୁ, ଦେହ, ଉପହାର, ଗର୍ଜ୍ଜନ, ରାଗ, ପ୍ରତିବିମ୍ବ ରୂପ—ଏ ପଦଗୁଡ଼ିକର ଅର୍ଥ ବୋଲ ।



## ରାଜପୁତ୍ର ଓ ଶିକ୍ଷକ

କୌଣସି ଏକ ସମୟରେ ନରେନ୍ଦ୍ର ନାମକ ଜଣେ ରାଜା ଥିଲେ । ତାଙ୍କର ଗୋଟିଏ ମାତ୍ର ପୁତ୍ର ସନ୍ତାନ ଥିଲା । ଯେତେବେଳେ ପୁତ୍ରର ବୟସ ପାଞ୍ଚ ବର୍ଷ ହେଲା, ସେତେବେଳେ ରାଜା ତାହାର ବିଦ୍ୟାରମ୍ଭ କରାଇବାକୁ ଇଚ୍ଛା କଲେ ।

ତହୁଁ ରାଜା ଜଣେ ଶିକ୍ଷକଙ୍କୁ ଡକାଇ କହିଲେ ;—'ଶିକ୍ଷକ ମହାଶୟ, ମୋ ପୁତ୍ରର ବିଦ୍ୟାରମ୍ଭ ସମୟ ଉପସ୍ଥିତ ହୋଇଅଛି । ଆପଣ ଦୟାପୂର୍ବକ ଅଦ୍ୟଠାରୁ ତାହାର ଶିକ୍ଷାଭାର ନେବେ ; ତାହାକୁ ଆପଣଙ୍କ ନିକଟରେ ଛାଡ଼ି ଦେଉଛି । ଆପଣ ନିଜ ପୁତ୍ର ପରି ତାହାକୁ ଶିକ୍ଷାଦାନ କରିବେ, ଏହା ମୋର ଅନୁରୋଧ ।'

ଶିକ୍ଷକ ରାଜାଙ୍କ କଥା ମାନି ରାଜପୁତ୍ରଙ୍କୁ ସଙ୍ଗରେ ନେଇ ଗଲେ ଏବଂ ତାଙ୍କୁ ନିଜ ପୁତ୍ରମାନଙ୍କ ସହିତ ପଢ଼ାଇଲେ । ଶିକ୍ଷକ ବହୁ ଯତ୍ନ ଓ ଶ୍ରମ କରି ରାଜପୁତ୍ରଙ୍କୁ ଶିକ୍ଷା ଦେଲେ । କିନ୍ତୁ ଗୁରୁପୁତ୍ରମାନଙ୍କ ଭଳି ରାଜପୁତ୍ର ଉତ୍ତମରୂପେ ପଢ଼ି ପାରିଲେ ନାହିଁ ।

ରାଜା ପୁତ୍ରର ଜ୍ଞାନବୃଦ୍ଧି ନ ହେବାର ଦେଖି ଭାରି ଦୁଃଖିତ ହେଲେ । ତହୁଁ ସେ ସେହି ଶିକ୍ଷକଙ୍କୁ ଡକାଇ କ୍ରୋଧରେ କହିଲେ, 'ଶିକ୍ଷକ ମହାଶୟ ! ମୋ ପୁତ୍ରକୁ ଉତ୍ତମ ଭାବରେ ଶିକ୍ଷା ଦେବା ପାଇଁ ସ୍ୱୀକାର କରିଥିଲେ ପରା ? କାହିଁ, ସେ ତ କିଛି ପଢ଼ୁ ନାହିଁ ! ସେ

ଆପଣଙ୍କ ପୁତ୍ରମାନଙ୍କ ପରି ଜ୍ଞାନବାନ୍ ନ ହେବାର କାରଣ କଣ ? ଆପଣଙ୍କୁ ବିଶ୍ୱାସ କରି ମୁଁ ଅତି ମନ୍ଦ କାର୍ଯ୍ୟ କରିଛି ।

ଶିକ୍ଷକ ଉତ୍ତର କଲେ, 'ମହାରାଜ, ମୁଁ ରାଜକୁମାରଙ୍କ ଶିକ୍ଷା ନିମିତ୍ତ ବହୁତ ଚେଷ୍ଟା କରିଛି । ତାଙ୍କୁ ଆଉ ମୋ ପୁଅମାନଙ୍କୁ ଏକ ପ୍ରକାର ଶିକ୍ଷା ଦେଇ ଆସୁଛି । କିନ୍ତୁ ଯାହାର ଯେତିକି ବୁଦ୍ଧି, ସେ ସେତିକି ଜ୍ଞାନ ଉପାର୍ଜ୍ଜନ କରି ପାରୁଛି । ମୋର କୌଣସି ଦୋଷ ନାହିଁ ।'

ଏହା ଶୁଣି ରାଜା ସନ୍ତୁଷ୍ଟ ହେଲେ । ସେ ରାଜକୁମାରଙ୍କ ଶିକ୍ଷାର ଅଧିକ ଯତ୍ନ ନେବାକୁ ଶିକ୍ଷକଙ୍କୁ ଅନୁରୋଧ କଲେ ।

ପ୍ରଶ୍ନ— ଏ କଥାଟି ତୁମ ନିଜ ଭାଷାରେ ଲେଖ ।
ଉପସ୍ଥିତ, ଦାନ, ଅନୁରୋଧ, ସ୍ୱୀକାର, ଉପାର୍ଜ୍ଜନ—ଏହି ସମସ୍ତ ଶବ୍ଦର ଅର୍ଥ କହ ।

## ଟିନ

ଶିକ୍ଷକ— ବିଜୟ, ଆମ୍ଭେ ତୁମକୁ ଟିନ ସମ୍ବନ୍ଧରେ କେତେକ କଥା କହିଥିଲି । ଯାହା ବୁଝାଇଥିଲି, ପଚାରିଲେ ଏବେ କହି ପାରିବ ତ ?

ବିଜୟ— ଆଜ୍ଞା ହଁ, କହିବି ।

ଶିକ୍ଷକ— ଆଚ୍ଛା କହ ଅଗେ, ଟିନ କ'ଣ ଏବଂ ତାହା କେଉଁଠାରୁ ବାହାର କରାଯାଏ ।

ବିଜୟ— ସୁନା, ରୁପା, ତମ୍ବା, ଲୁହା ପରି ଟିନ ଗୋଟିଏ ଧାତୁ । ଅନ୍ୟାନ୍ୟ ଧାତୁ ପରି ତାହା ଖଣିରୁ ବାହାର କରାଯାଏ ।

ଶିକ୍ଷକ—ଟିନ କିପରି ଦେଖାଯାଏ ?

ବିଜୟ—ତାହା ରୁପା ଭଳି ଶୁକ୍ଳ, ଉଜ୍ଜ୍ୱଳ ଦିଶେ ।

ଶିକ୍ଷକ—ବିଶୁଦ୍ଧ, ଶୁଭ୍ର ଟିନ ଖଣିରୁ ବାହାରେ ?

ବିଜୟ—ନାହିଁ ଆଜ୍ଞା, ତାହା କିପରି ହେବ ! ଖଣିରୁ ବାହାରିବା-ବେଳେ ଟିନ ଦେହରେ ମାଟି, ମଇଳା ମିଶିଥାଏ । ତରଳାଇ ଦେଲେ ତହିଁରୁ ବିଶୁଦ୍ଧ ଟିନ ବାହାରେ । ସେତେବେଳେ ତାହା ଶୁଭ୍ର, ଉଜ୍ଜ୍ୱଳ ଦେଖାଯାଏ ।

ଶିକ୍ଷକ—ଟିନର ଓଜନ ସମ୍ବନ୍ଧରେ କଣ କହିଥିଲି ?

ବିଜୟ—ତାହା ତମ୍ବା ବା ଲୁହା ଅପେକ୍ଷା ଅଧିକ ଲଘୁ ।

ଶିକ୍ଷକ—ଛୁରିରେ ତାହା କାଟି ହୋଇପାରେ ?

ବିଜୟ—ଆଜ୍ଞା ହଁ, ସୁନ୍ଦର କାଟି ହୋଇଯାଏ । ସେଥିରୁ ବୁଝାଯାଏ ଯେ, ଟିନ ଗୋଟିଏ କୋମଳ ଧାତୁ ।

ଶିକ୍ଷକ—ଭଲ ମନେ ରଖିଛ । ଖୋଲା ସ୍ଥାନ ବା ସନ୍ତସ୍ତ ଭୂମିରେ କେତେକ ସମୟ ଟିନ ପାତ୍ର ରଖିଲେ, ତା ଦେହରେ କଳଙ୍କ ଲାଗେ କି ?

ବିଜୟ—ନା, ଲାଗେ ନାହିଁ । ମାତ୍ର ଖୋଲା ବା ଓଦା ଜାଗାରେ ଲୁହା ବା ତମ୍ବା ବାସନ ରଖିଲେ, ତା ଦେହରେ କଳଙ୍କ ଲାଗିଯାଏ ।

ଶିକ୍ଷକ—ଟିନ ଆଘାତ ସହିପାରେ ?

ବିଜୟ—ଆଜ୍ଞା ହଁ, ହାତୁଡ଼ିରେ ପିଟି ଟିନକୁ ବଡ଼ କରି ଯାଇ ପାରେ—ତାକୁ ନାନା ଆକାର ଦିଆ ଯାଇ ପାରେ । କିନ୍ତୁ ତାହା ଶକ୍ତ ନୁହେ । ଟିନ-ତାର ସହଜରେ ଭାଙ୍ଗି ଯାଏ ।

ଶିକ୍ଷକ—ଟିନକୁ ଅଗ୍ନି ତାପ ଦେଲେ କଣ ହୁଏ ?

ବସନ୍ତ – ଗୋଟିଏ ଚାମଚରେ କେତେ ଖଣ୍ଡ ଟିଣ ପକାଇ ତାକୁ ନିଆଁ ଉପରେ ରଖିଲେ ଟିଣ ଖଣ୍ଡ ସବୁ ଚଞ୍ଚଳ ତରଳି ଯାଏ ।

ଶିକ୍ଷକ—ଟିଣ ଆମର କି କି କାମରେ ଲାଗେ ?

ବସନ୍ତ – ତମ୍ବା ପାତ୍ର ଭିତରେ ଟିଣ କଳେଇ ଦିଆ ହୁଏ । ପାତଳ ଟିଣ-ପାତିଆ ମୋଡ଼ା ତା' ଭିତରେ ସାବୁନ୍, ବିଲାତି ମିଠାଇ ଇତ୍ୟାଦି ରଖା ହୁଏ । ଟିଣରେ ତାର ବି ତିଆରି ହୁଏ ।

ପ୍ରଶ୍ନ—

ସମ୍ବନ୍ଧରେ, ଶକ୍ତ, ଉଜ୍ଜ୍ୱଳ, ଶୁଭ୍ର, ବିଶୁଦ୍ଧ, ଲଘୁ, ସତ୍ୱର, କଳଙ୍କ, ଆଘାତ, ଅଗ୍ନିତାପ, ବିଲାତି ମିଠାଇ—ଏ ପଦଗୁଡ଼ିକ ବୁଝାଅ ।

ଟିଣରେ ଆଉ କି କି କାମ କରାଯାଏ ?

---

## ଆଖୁ

ଦୂବ ପରି ଆଖୁ ଗୋଟିଏ ତୃଣ । ତାହା ୭।୮ ଫୁଟ ଉଚ୍ଚ ବଢ଼େ । ତାହାର ଶାଖା ନାହିଁ । ଆଖୁର କାଣ୍ଡ ଦୀର୍ଘ ଓ ମୋଟ । ସେଥିରେ ଅନେକଗୁଡ଼ିଏ ଗଣ୍ଠି ଥାଏ ଏବଂ ତାହା ମଧୁର ରସରେ ପୂର୍ଣ୍ଣ । ଖରାଦିନେ କେତେକ ଲୋକ ଆଖୁ ଖଣ୍ଡ ଚୋବାଇ ରସ ଖାଆନ୍ତି । ଆଖୁ କାଣ୍ଡର ପ୍ରତ୍ୟେକ ଗଣ୍ଠି ମୂଳରୁ ଲମ୍ବା ସରୁ ପତ୍ର ବାହାରି ଥାଏ ।

ଆଖୁ ଉଷ୍ଣପ୍ରଧାନ ଦେଶରେ ଜାତ ହୁଏ । ଆମ ଦେଶ ଆଖୁର ଜନ୍ମସ୍ଥାନ । ମାତ୍ର ଆଜି କାଲି ଏଠା ଆଖୁ ଚାଷର ଅବସ୍ଥା ଭଲ ନୁହେଁ ।

ଆଖୁ ବୀଜରୁ ଜନ୍ମେ ନାହିଁ । ତା ଅଗ୍ରଭାଗର ପତ୍ର ଛଡ଼ାଇ ଦି ତିନି ଗଣ୍ଠି ପର୍ଯ୍ୟନ୍ତ ଛାଡ଼ି କାଟି ନେବାକୁ ହୁଏ । ଏହାକୁ ଖଣ୍ଡ ଖଣ୍ଡ

କରି ଓଦା ପାଲଭୁଣା ଓ ପାଉଁଶ ସହିତ ଓଦା ମାଟିରେ ପୋତି ଦିଆ ଯାଏ । ଅଳ୍ପ କେତେକ ଦିନ ପରେ ଏହି ସମସ୍ତ ଖଣ୍ଡରୁ ଗଜା ବାହାରେ । ଆଖୁ ଚାଷରେ ଅଧିକ ଯତ୍ନ ଦରକାର ହୁଏ ନାହିଁ । ଥରକୁ ଥର ଶୁଖିଲା ପତରରୁ ବାହାର କରିଦେଲେ ହେଲା ।

ଚୈତ୍ର-ବୈଶାଖ ମାସ ଆଖୁ ରୋଇବାର ସମୟ । ଆଖୁ କ୍ଷେତରେ ବାରମ୍ବାର ପାଣି ଦେବାକୁ ହୁଏ । ଏଣୁ ଚଷାମାନେ ନଈ, ପୋଖରୀ ପାଖ ଜମିରେ ଆଖୁ ଚାଷ କରିଥାନ୍ତି । ଆଖୁ କିଛି ବଢ଼ିବା ପରେ ତା ମୂଳରେ ମାଟି ଦେବା ଦରକାର । ମୂଳର ମାଟି ଆଣ୍ଠୁ ହୋଇଗଲେ, ତାହା ବାଙ୍କରେ ଅଲଗା କରି ଦେବାକୁ ହୁଏ । ଆଖୁ ବିଲରେ ଗୋବର, ବାଲି, ପୋଖରୀ ପଙ୍କ, ହାଡ଼ ଇତ୍ୟାଦି ସାର ଦିଆ ଯାଏ ।



ଆଖୁ ବଡ଼ ହେବା ପରେ କଟାଯାଏ । ଆଖୁ ପେଡ଼ିବା ପାଇଁ ଗୋଟିଏ କଳ ଦରକାର ହୁଏ । କଳଟି କାଠରେ ତିଆରି । ତାହାକୁ 'କେନ୍ଦୁଆ' କହନ୍ତି । ଆଜିକାଲି ଲୁହା କଳରେ ମଧ୍ୟ ଆଖୁ ପେଡ଼ି ରସ ବାହାର କରା ହୁଏ । ଆଖୁ ରସ ବଡ଼ ବଡ଼ କଡ଼େଇରେ ଭରତି କରି ତହିଁରେ ନିଆଁ ଜାଳ ଦେଲେ ତାହା ବହଳ ହୋଇ ଗୁଡ଼ ତିଆରି ହୁଏ । ଗୁଡ଼ରୁ ଚିନି ଉତ୍ପନ୍ନ ହୁଏ ।

ଆଖୁ ରସ ଛଡ଼ା ଦ୍ରାକ୍ଷା, ଖଜୁରି, ତାଳରସରୁ ବି ଚିନି ପ୍ରସ୍ତୁତ ହୁଏ ।

ପ୍ରଶ୍ନ—

ଆଖୁ ଗଛ କିପରି ଲଗାଯାଏ ?

ଆଖୁ ଆମର କି ଉପକାର କରେ ?

ତୃଣ, ରସ, ବୀଜ, ବାରମ୍ବାର, ଶକ୍ତି, ସାର, ଉତ୍ପନ୍ନ—ଏ ଶବ୍ଦର ଅର୍ଥ କହ ।

—※※—

# ହରିଣୀ ଉଦ୍ଧାର

ଯେ ବିପଦବେଳେ ଭକ୍ତି ସହିତ ପ୍ରାଣପଣେ ଈଶ୍ୱରଙ୍କୁ ଡାକେ, ଈଶ୍ୱର ତାହାକୁ ଆପଦରୁ ରକ୍ଷା କରନ୍ତି ।

ଥରେ ଗୋଟିଏ ହରିଣୀ ତାହାର ଦୁଇଗୋଟି ଛୁଆ ସଙ୍ଗରେ ଘୋର ବନ ମଧ୍ୟରେ ବୁଲୁଥିଲା । ସେହି ସମୟରେ ସେ ଗର୍ଭବତୀ ।

ଜଣେ ଶିକାରୀ ହରିଣୀ ଓ ହରିଣଛୁଆମାନଙ୍କୁ ଏହି ଅବସ୍ଥାରେ ଦେଖି ସେମାନଙ୍କୁ ମାରିବାକୁ ମନ ବଳାଇଲା । ହରିଣ ତ ସହଜରେ ଧରା ଦେବା ଜନ୍ତୁ ନୁହେ । ଏଣୁ ଶିକାରୀ ଗୋଟିଏ କୌଶଳ କଲା ।



ହରଣୀ ଓ ତା ଛୁଆମାନେ ଥିବା ସ୍ଥାନର ପଛ ଭାଗରେ ସେ ନିଆଁ ଜାଳିଦେଲା ଏବଂ ସେମାନଙ୍କ ଉଭୟ ପାର୍ଶ୍ୱରେ ଜାଲ ଭିଡ଼ିଦେଲା । ପରେ ଧନୁଶର ଧରି ସେମାନଙ୍କ ଆଗରେ ଯାଇ ଠିଆ ହୋଇ ଗଲା ।

ଚାରିଆଡ଼େ ବିପଦ ଦେଖି ହରଣୀ ବଡ଼ ଚିନ୍ତିତ ହୋଇ ପଡ଼ିଲା । ପାଖରେ ଦୁଇଟି ଛୁଆ ଅଛନ୍ତି, ସାହାଯ୍ୟ କରିବାକୁ କେହି ନାହିଁ । ଏଣୁ ତାକୁ ଆଉ ବୁଦ୍ଧି ଦିଶିଲା ନାହିଁ ।

ଶେଷରେ ହରଣୀ ବିକଳ ପ୍ରାଣରେ ଭଗବାନଙ୍କୁ ଡାକିଲା, ଏହି ଆପଦରୁ ଉଦ୍ଧାର କରିବାକୁ ଗୁହାରି ଜଣାଇଲା ।

ସତକୁ ସତ ଈଶ୍ୱର ତାହାର ଗୁହାରି ଶୁଣିଲେ । ତାଙ୍କ ଇଚ୍ଛାରେ ସେହିକ୍ଷଣି ବନ ମଧ୍ୟରେ ଭୟଙ୍କର ଝଡ଼ ବୃଷ୍ଟି ଆରମ୍ଭ ହେଲା । ହରଣୀର ପଛ ଆଡ଼େ ଜଳୁଥିବା ନିଆଁ ବର୍ଷାରେ ନିଭିଗଲା, ପବନରେ ଜାଲ ବାଡ଼ ଛିଣ୍ଡି କେଉଁ ଆଡ଼େ ଉଡ଼ି ପଳାଇଲା । ଈଶ୍ୱର ରକ୍ଷା କଲେ କଣ ବା ନ ହୁଏ ! ଦେଖୁଁ ଦେଖୁଁ ଶବର ଉପରେ ବଜ୍ର ପଡ଼ିବାରୁ ସେ ଜୀବନ ହରାଇଲା ।

ଈଶ୍ୱରଙ୍କ ଦୟାରୁ ହରଣୀ ଓ ତା ଛୁଆମାନେ ଏହିପରି ଉଦ୍ଧାର ପାଇଲେ । ଏହି କାରଣରୁ ଲୋକେ କହନ୍ତି—'ହରି ରଖେ ମାରେ କିଏ, ହରି ମାରେ ରଖେ କିଏ ?'

ପ୍ରଶ୍ନ—

ହରଣୀ ଓ ତା ଛୁଆମାନେ ବିପଦରୁ କିପରି ଉଦ୍ଧାର ପାଇଲେ ?

ଏପରି ଆଉ କି ଗଳ୍ପ ଶୁଣିଛ ?

ଜୀବ, ପ୍ରାଣିପଣେ, ଆପଦ, କୌଶଳ, ପାର୍ଶ୍ୱରେ, ଝଡ଼ବୃଷ୍ଟି, ଶବର, ବଜ୍ର—ଏ ଶବ୍ଦମାନଙ୍କର ଅର୍ଥ କହ ।

# ଗଙ୍ଗା

ଭାରତବର୍ଷର ଉତ୍ତରଭାଗରେ ଗଙ୍ଗାନଦୀ ବହି ଯାଉଛି । ଏହି ପବିତ୍ର ନଦୀ ତଟରେ କାଶୀ ନଗର ଅବସ୍ଥିତ । ଏହାର ଅନ୍ୟ ନାମ ବାରାଣସୀ । ତୁମ୍ଭେମାନେ ଏଥିପୂର୍ବେ ଏହି ନଗରର ନାମ ଶୁଣିଥାଉଥିବ । ପ୍ରତ୍ୟେକ ହିନ୍ଦୁ ବାଳକ ଓ ବାଳିକାର ଏହି ପବିତ୍ର ନଗର ବିଷୟରେ କିଛି ଜାଣିବା ଉଚିତ । ଏହା ହିନ୍ଦୁମାନଙ୍କର ଗୋଟିଏ ପ୍ରଧାନ ତୀର୍ଥ ।

ଗଙ୍ଗାରେ ସ୍ନାନ କଲେ ପାପ ଦୂର ହୁଏ ଏବଂ ପୁଣ୍ୟ ବଢ଼େ ବୋଲି ହିନ୍ଦୁମାନେ ବିଶ୍ୱାସ କରନ୍ତି । ଏଣୁ ଭାରତବର୍ଷର ନାନା ସ୍ଥାନରୁ ହିନ୍ଦୁମାନେ ଯାଇ ଏହି ପବିତ୍ର ନଦୀରେ ସ୍ନାନ କରନ୍ତି ।

ପ୍ରତିଦିନ ଗଙ୍ଗାଘାଟରେ ଅନେକ ବୃଦ୍ଧ ବୃଦ୍ଧା, ଯୁବକ ଯୁବତୀ ବାଳକ ବାଳିକା ସ୍ନାନ କରନ୍ତି । ଗଙ୍ଗାତଟରେ ବାସ କଲେ ଏବଂ ସେଠାରେ ପ୍ରାଣ ତ୍ୟାଗ କଲେ ଜୀବନ ଧନ୍ୟ ହୁଏ, ମୁକ୍ତି ମିଳେ ବୋଲି ହିନ୍ଦୁ ଜାତିର ବିଶ୍ୱାସ ।

ଗଙ୍ଗାକୂଳରେ ଅନେକ ତାଳପତ୍ର ଛତା ଦେଖାଯାଏ । ପ୍ରତ୍ୟେକ ଛତା ତଳେ ଜଣେ ଜଣେ ବ୍ରାହ୍ମଣ ବସିଥାନ୍ତି । ସେମାନେ ପୁରୋହିତ କାମ କରନ୍ତି । ସ୍ନାନ ପରେ ଯାତ୍ରିମାନେ ସେହି ବ୍ରାହ୍ମଣମାନଙ୍କ ସାହାଯ୍ୟରେ ସେଠାରେ ପିତୃଶ୍ରାଦ୍ଧ କରନ୍ତି । ଗଙ୍ଗାର ଅନ୍ୟ ତଟରୁ ଦେଖିଲେ କାଶୀ ସହର ବଡ଼ ସୁନ୍ଦର ଦିଶେ ।

ପ୍ରଶ୍ନ—

ହିନ୍ଦୁମାନେ ଗଙ୍ଗାରେ ସ୍ନାନ କରନ୍ତି କାହିଁକି ?

ଭାରତର ଅନ୍ୟ କେତୋଟି ତୀର୍ଥର ନାମ ବୋଲ ।
ଭାରତରେ କେତେ ଗୋଟି ନଦୀ ଅଛି ?
ଅବସ୍ଥିତ, ପିତୃଶ୍ରାଦ୍ଧ, ଯାତ୍ରା—ଏଗୁଡ଼ିକର ଅର୍ଥ କହ ।

—❉*❉—

# କବି ଉପେନ୍ଦ୍ର ଭଞ୍ଜ

ଅନେକ ଦିନ ପୂର୍ବେ ଗଞ୍ଜାମ ଜିଲ୍ଲାର ଗୁମୁସରରେ ଭଞ୍ଜବଂଶର ରାଜାମାନେ ରାଜତ୍ୱ କରୁଥିଲେ । କୁଳାଡ଼ ସେମାନଙ୍କର ରାଜଧାନୀ ଥିଲା । ସେହି ବଂଶର ରାଜାମାନେ ବର୍ତ୍ତମାନ ସେଠାରେ ଆଉ ନାହାନ୍ତି । ଗୁମୁସର ଏବେ ଇଂରାଜ ସରକାରଙ୍କ ଅଧୀନ ।

ଆଜକୁ ପ୍ରାୟ ୨୨୪ ବର୍ଷ ତଳେ ସେହି ବଂଶର ନୀଳକଣ୍ଠ ଭଞ୍ଜ ନାମକ ଜଣେ ରାଜା ସେଠାରେ ରାଜତ୍ୱ କରୁଥିଲେ । ସେ ଦୁଇ ବର୍ଷ ମାତ୍ର ରାଜା ହୋଇଥିଲେ । ତାଙ୍କ ଭାଇମାନେ ଶତ୍ରୁ ହୋଇ ରାଜ୍ୟରୁ ତାଙ୍କୁ ତଡ଼ିଦେବାରୁ, ସେ ନିଜ ପରିବାର ସହିତ ନୂଆଗଡ଼କୁ ପଳାଇଥିଲେ । ଉପେନ୍ଦ୍ର ଭଞ୍ଜ ନୀଳକଣ୍ଠ ଭଞ୍ଜଙ୍କ ପୁତ୍ର ।

ଉପେନ୍ଦ୍ର ଭଞ୍ଜ ପ୍ରାୟ ୧୬୮୫ ଖ୍ରୀଷ୍ଟାବ୍ଦରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତା ରାଜ୍ୟ ଛାଡ଼ି ପଳାଇବା ବେଳକୁ ଉପେନ୍ଦ୍ର ଭଞ୍ଜ ଅଳ୍ପ ବୟସର ବାଳକ ଥିଲେ । ବାଲ୍ୟ କାଳରେ ସେ ମନ୍ଦ ବାଳକମାନଙ୍କ ସଙ୍ଗରେ ମିଶି ସର୍ବଦା ଦୁଷ୍ଟ କାମ କରୁଥାନ୍ତି ।

ଯୁବକ ହେବା ମାତ୍ରେ ତାଙ୍କ ମନରେ ବିଦ୍ୟାଶିକ୍ଷା କରିବା ଇଚ୍ଛା ଜାତ ହେଲା । ସେ ବହୁ ପରିଶ୍ରମ ସହିତ ଜ୍ଞାନ ଅର୍ଜ୍ଜନ କରିବାକୁ ଲାଗିଲେ । ସେ ଜଣେ ପ୍ରଧାନ ରାମଭକ୍ତ । ସେ ରାମଙ୍କଠାରେ ଦୃଢ଼

ବିଶ୍ୱାସ ରଖି ଲେଖା ପଢ଼ା ଆରମ୍ଭ କଲେ । ସେ ପ୍ରତ୍ୟହ ଶ୍ରୀମତାରକ ମନ୍ତ୍ର ଜପୁଥାନ୍ତି । ସାଧନାବଳରେ ସେ ସକଳ ଶାସ୍ତ୍ରରେ ଗଭୀର ଜ୍ଞାନ ଲାଭ କରି ପାରିଲେ । ଈଶ୍ୱରଙ୍କ ପ୍ରତି ଦୃଢ଼ ଭକ୍ତି, ବିଶ୍ୱାସ ରଖି ପରିଶ୍ରମ ସହିତ ପାଠ ପଢ଼ିଲେ ଉତ୍ତମ ବୁଦ୍ଧି ଓ ଜ୍ଞାନ ହୁଏ । ସଂସ୍କୃତ ବ୍ୟାକରଣ, ଜ୍ୟୋତିଷ, ଆୟୁର୍ବେଦ ଇତ୍ୟାଦି ଶାସ୍ତ୍ରରେ ଉପେନ୍ଦ୍ର ଭଞ୍ଜଙ୍କର ଉତ୍ତମ ଜ୍ଞାନ ଥିଲା ।

ପରେ ସେ ଅନେକ କବିତା ରଚନା କଲେ । ତାଙ୍କର କବିତା ସବୁ ଅତ୍ୟନ୍ତ ସୁନ୍ଦର, ସରସ । ତାଙ୍କର ପଦ୍ୟ ଲେଖାରେ ସେହି ସମୟର ପଣ୍ଡିତମାନେ ବିଶେଷ ପ୍ରୀତ ହେଲେ । ଏଣୁ ଉପେନ୍ଦ୍ର ଭଞ୍ଜ ଅଧିକ ଉତ୍ସାହରେ ଅନେକ ପୁସ୍ତକ ଲେଖିଗଲେ । ତାଙ୍କ ଲେଖାରେ ସନ୍ତୁଷ୍ଟ ହୋଇ ସେହି ସମୟର ନୟାଗଡ଼ ରାଜା ତାଙ୍କୁ 'କବିବର' ଉପାଧି ଦେଇଥିଲେ ।

ପୁସ୍ତକ ଲେଖାରେ ତାଙ୍କର ବଡ଼ ନାମ ହେଲା । ବାଣପୁରର ସେହି ସମୟର ରାଜା ଉପେନ୍ଦ୍ର ଭଞ୍ଜଙ୍କ ସହିତ ନିଜ କନ୍ୟାଙ୍କର ବିବାହ ଦେଲେ । ଉପେନ୍ଦ୍ର ଭଞ୍ଜ ବାଣପୁରରେ କେତେକ ଦିନ କଟାଇଥିଲେ । ତାଙ୍କ ପତ୍ନୀ ମଧ୍ୟ ପଣ୍ଡିତା ଥିଲେ ।

ଉପେନ୍ଦ୍ର ଭଞ୍ଜ ରାଜପୁତ୍ର ହେଲେହେଁ ରାଜପଣ କରି ପାରି ନ ଥିଲେ । କିନ୍ତୁ ସେଥିପାଇଁ ତାଙ୍କର ଦୁଃଖ ନ ଥିଲା । ସେ ତାଙ୍କ ଜୀବନକୁ ଶାସ୍ତ୍ରପାଠ ଓ ପୁସ୍ତକରଚନାରେ କଟାଇଥିଲେ ।

ଆଜି ପର୍ଯ୍ୟନ୍ତ ତାଙ୍କର କୋଡ଼ିଏ ଖଣ୍ଡ ମାତ୍ର ଗ୍ରନ୍ଥ ପ୍ରକାଶିତ ହୋଇଅଛି । ସେଥି ମଧ୍ୟରେ 'ବୈଦେହୀଶବିଳାସ' ପ୍ରଧାନ ।

ଉପେନ୍ଦ୍ର ଭଞ୍ଜ ଓଡ଼ିଆ ଭାଷାର ଅଶେଷ ଉପକାର କରି ଅଛନ୍ତି । ସେ ଓଡ଼ିଶାର ସର୍ବୋତ୍କୃଷ୍ଟ କବି ଥିଲେ । ତାଙ୍କର ଲେଖା ଓଡ଼ିଆର ଗୌରବ ବଢ଼ି ଯାଉଅଛି । ସେ ପ୍ରାୟ ୪୦ ବର୍ଷ ଜୀବିତ ଥିଲେ । ସେ ୧୬୬୯ ଖ୍ରୀଷ୍ଟାବ୍ଦରେ ପରଲୋକ ଯାତ୍ରା କରିଥିଲେ ।

ପ୍ରଶ୍ନ—

ଉପେନ୍ଦ୍ର ଭଞ୍ଜଙ୍କ ଚରିତ ଲେଖ ।

ସେ କିପରି ଓଡ଼ିଆ ଭାଷାର ମର୍ଯ୍ୟାଦା ରକ୍ଷା କରି ଅଛନ୍ତି ?

ରାଜତ୍ୱ, ରାଜଧାନୀ, ବର୍ତ୍ତମାନ, ଅଧୀନ, ଖ୍ରୀଷ୍ଟାବ୍ଦ, ସାଧନା, ଆୟୁର୍ବେଦ, କବିତା, ବିଶେଷ, ଉପାଧି, କନ୍ୟା, ରଚନା, ଗ୍ରନ୍ଥ, ପ୍ରକାଶିତ, ଅଶେଷ, ପରଲୋକ ଯାତ୍ରା କରିଥିଲେ—ଏ ସବୁ ପଦ ବୁଝାଇ ଦିଅ ।

---

## ଡାକ

ହରି—ଭାଇ କୃଷ୍ଣ, ଚିଠିଟି ଡାକଘରକୁ ପଠାଇଦେଲ ?

କୃଷ୍ଣ—ହଁ ଭାଇ, ଶଙ୍କର ହାତରେ ପଠାଇ ସାରିଛି ।

ହରି—ଚିଠି ଦେହରେ ଡାକ ଟିକଟ ଖଣ୍ଡିକ ଲଗାଇଛ ତ ?

କୃଷ୍ଣ—ହଁ ଲଗାଇଛି । ଭାଇ, ପ୍ରତ୍ୟେକ ପତ୍ର ଦେହରେ ଡାକ ଟିକଟ କାହିଁକି ଲଗାଇବାକୁ ହୁଏ ?

ହରି—କୌଣସି ସ୍ଥାନକୁ ଜଣେ ମନୁଷ୍ୟ ହାତରେ ପତ୍ର ପଠାଇଲେ ତାହାକୁ କିଛି ଧନ ଦେଉଁ । ସେହିପରି, ଆମ୍ଭେମାନେ ଯାହା

ନିକଟକୁ ଡାକରେ ପତ୍ର ପଠାଉଁ, ତାହାକୁ ତାହା ଠିକ୍ ସ୍ଥାନରେ, ଠିକ୍ ସମୟରେ ଦେବା ନିମିତ୍ତ ଅମ୍ଭେମାନେ ଡାକ-ଘରକୁ କିଛି ଧନ ଦେଇଥାଉ । ଅମ୍ଭମାନଙ୍କୁ ସେହି ଧନ ଟିକଟ ସ୍ୱରୂପ ଦେବାକୁ ପଡ଼େ ।

କୃଷ୍ଣ—ଗୁରୁ, ଟିକଟ କେଉଁଠାରେ ମିଳେ ?

ହରି—ଡାକଘରେ ବିକ୍ରି ହୁଏ ।

କୃଷ୍ଣ—ଡାକଘରେ ଲୋକେ ସେହି ବିକ୍ରି-ଧନ କଣ କରନ୍ତି ?

ହରି—ଡାକବାଲାମାନଙ୍କୁ ବେତନ ଦେବା ନିମନ୍ତେ ଏବଂ ଚିଠି ସବୁ ରେଳ, ମୋଟର ବା ସଗଡ଼ରେ ପଠାଇବା ସକାଶେ ବହୁତ ଧନ ଆବଶ୍ୟକ । ସେହି ଧନ ଏହି ସମସ୍ତ ଖର୍ଚ୍ଚରେ ଲାଗେ ।

କୃଷ୍ଣ—ଭାଇ, ଏବେ ଯେଉଁ ପତ୍ରଟି ପଠାଗଲା, ତାହା କଣ ରେଳ-ଗାଡ଼ିରେ ଯିବ ?

ହରି—ହଁ ରେଳରେ ଯିବ । ଡାକଗାଡ଼ିରେ ଛୋଟିଏ ଗୋଟିଏ କୋଠରି ଥାଏ । ତହିଁରେ ଚିଠିପତ୍ର ଛଡ଼ା ଅନ୍ୟ ପଦାର୍ଥ ରଖା ଯାଏ ନାହିଁ । ଗାଡ଼ି ଚାଲିବାବେଳେ କେତେକ ଜଣ ଡାକକର୍ମଚାରୀ ଗାଡ଼ିର ଛୋଟ କୋଠରିରେ ରହି ଚିଠି ସବୁ ସଜାଡ଼ି ରଖନ୍ତି । ଡାକଘର ଥିବା ସ୍ଥାନମାନଙ୍କ ପାଇଁ ଭିନ୍ନ ଭିନ୍ନ ମୁଣା ଥାଏ । ଯେଉଁ ସ୍ଥାନକୁ ଯେଉଁ ଚିଠିପତ୍ର ଯିବ, ସେମାନଙ୍କ ସେହି ସ୍ଥାନର ମୁଣାରେ ଭରତି କରାଯାଏ ।

କୃଷ୍ଣ—ସେମାନେ ମୁଣାସବୁ ଚିଠିରେ ଭର୍ତ୍ତି କରି କଣ କରନ୍ତି ?

ହରି—ରେଳଗାଡ଼ି ପ୍ରାୟ ପ୍ରତ୍ୟେକ ଷ୍ଟେସନରେ କିଛି ସମୟ ରହେ, ସେହି ସମୟରେ ରେଳର ଡାକକର୍ମଚାରୀମାନେ ସେହି

ଷ୍ଟେସନରେ ·ଦେବାକୁ ହବା ମୁଣା ସେଠାରେ ଛାଡ଼ିଯାନ୍ତି । ଅନ୍ୟାନ୍ୟ ଷ୍ଟେସନକୁ ଯିବାକୁ ଥିବା ମୁଣାସବୁ ସେହି ଷ୍ଟେସନରୁ ଧରି ଯାନ୍ତି ।

କୃଷ୍ଣ— ଭାଇ, ଯେଉଁ ଷ୍ଟେସନରେ ଡାକଗାଡ଼ି ରହେ ନାହିଁ, ସେଠାରେ ଚିଠି-ମୁଣା ଦିଆ ଯାଏ କପରି ?

ହରି—ଉତ୍ତମ ପ୍ରଶ୍ନ ! ଶୁଣ, ସେଭଳି ଷ୍ଟେସନକୁ ପ୍ୟାସେଞ୍ଜର ଗାଡ଼ିରେ ଚିଠି ମୁଣା ପଠାଯାଏ । ଯେଉଁଠାକୁ ରେଲ ଯାଏ ନାହିଁ, ସେହି ସ୍ଥାନକୁ ଚିଠିସବୁ ମୋଟର ଗାଡ଼ି ବା ଶଗଡ଼ରେ ପଠାଯାଏ; ନୋହିଲେ ଧାଉଡ଼ିଆମାନଙ୍କ ଦ୍ୱାରା ପଠାଇ ଦିଆଯାଏ ।

କୃଷ୍ଣ—ଭାଇ, ଯେଉଁ ଲୋକମାନଙ୍କ ନିକଟକୁ ପତ୍ର ପଠାଯାଏ, ଠିକ୍ ସେମାନଙ୍କୁ ଉପଯୁକ୍ତ ଭାବରେ ମିଳେ ତ ?

ହରି—ନିଶ୍ଚୟ, ଡାକବାଲାମାନେ ରେଲରୁ ଚିଠିମୁଣା ସବୁ ଆଣି ପ୍ରଥମରେ ଡାକଘରେ ରଖନ୍ତି । ସେଠାରେ ପ୍ରତ୍ୟେକ ପତ୍ର ପିଠିରେ ଡାକଘରର ଗୋଟିଏ ଛାପ ଦିଆଯାଏ । ସେହି ଛାପ ବା ମୁଦ୍ରାରୁ ଡାକଘରର ନାମ ଏବଂ ତାରିଖ ଜଣା ପଡ଼େ । ପରେ ଡାକବାଲାମାନେ ସେଠାରୁ ପତ୍ର ସବୁ ନେଇ ଲୋକଙ୍କୁ ଦିଅନ୍ତି ।

କୃଷ୍ଣ— ଭାଇ, ରମ୍ଭା ଅତି ନିକଟରେ ଅଛି । ଗତକାଲି ସେଠାକୁ ଆମର ଗୋପୀ ଭାଇଙ୍କ ପାଖକୁ ଯେଉଁ ପତ୍ର ଲେଖିଥିଲୁ, ତହିଁରେ ଦୁଇ ପଇସାର ଡାକ ଟିକଟ ଲଗା ହୋଇଥିଲା ।

ଆଜ କାଶୀକି ବାପାଙ୍କଠାକୁ ପଠାଇବା ପତ୍ରରେ ମଧ ସେଇ ଦୁଇ ପଇସିକିଆ ଟିକଟ ଦିଆଯାଇଛି । କାଶୀ ପରା ଏଠାରୁ ଅନେକ ଦୂରରେ ଅଛି ? ତେବେ ଅଳ୍ପ ଦୂରକୁ ଚିଠି ପଠାଇବାକୁ ହେଲେ ଯେତିକି ମୂଲ୍ୟର ଡାକଟିକଟ ଆବଶ୍ୟକ ହୁଏ, ସେତିକି ମୂଲ୍ୟର ଟିକଟରେ ବହୁ ଦୂରକୁ ବି ପଠାଯାଇ ପାରିବ ?

ଉତ୍ତର— ହଁ ଅତି ନିକଟ କିମ୍ବା ଅତି ଦୂର ହେଉ, ସମାନ ମୂଲ୍ୟର ଟିକଟରେ ପଠାଯାଇ ପାରିବ । ତେବେ ଚିଠିର ଓଜନ ଅଧିକ ଥିଲେ ସେଥିରେ ଆଉ କିଛି ଅଧିକ ମୂଲ୍ୟର ଟିକଟ ଦେବାକୁ ପଡ଼େ ।

ପ୍ରଶ୍ନ—

ଗୋଟିଏ ସ୍ଥାନର ଚିଠି ଅନ୍ୟ ସ୍ଥାନକୁ **କିପରି ଯାଏ ?**
ଚିଠି ଲେଖି ଡାକରେ ନ ଦେଉଣୁ କଣ କରିବାକୁ ହୁଏ ?
ଲୋକମାନେ କିପରି ଚିଠି ପଢ଼ି ପାରନ୍ତି ?

---

## ପରିଚ୍ଛନ୍ନତା

ଦେହର ଚର୍ମରେ ଅନେକ ଗୁଡ଼ିଏ ସାନ ସାନ ରନ୍ଧ୍ର ଅଛି । ସେଗୁଡ଼ିକ ଏତେ ସାନ ଯେ, ଖାଲି ଆଖିରେ ଦେଖା ଯାଏ ନାହିଁ । ଅଣୁବୀକ୍ଷଣଯନ୍ତ୍ର ନାମକ ଏକ ଯନ୍ତ୍ର ସାହାଯ୍ୟରେ ଦେଖିଲେ ଦେହର ଏହି କ୍ଷୁଦ୍ର ଗର୍ତ୍ତସବୁ ସ୍ପଷ୍ଟରୂପେ ଦେଖାଯାଏ । ଶରୀରର ଏହି କ୍ଷୁଦ୍ର ଛିଦ୍ର ସକଳ ରୋମମୂଳରେ ଥିବାରୁ ସେଗୁଡ଼ିକୁ 'ଲୋମକୂପ' ବୋଲାଯାଏ । ଏହି

ସମସ୍ତ ରନ୍ଧ୍ରବାଟେ ଝାଳ ବାହାରେ । ଲୋମମୂଳ ବାଟେ ଏକ ପ୍ରକାର ତେଲ ବି ବାହାର ହୁଏ । ଏହି ତେଲ ଚର୍ମକୁ ଚିକ୍କଣ ଓ କୋମଳ ରଖେ ।

କୌଣସି ଦ୍ରବ୍ୟ ଏହି ସୂକ୍ଷ୍ମ ଛିଦ୍ରକୁ ବନ୍ଦ କରି ଦେଲେ ଝାଳ ଓ ତେଲ ଆଉ ବାହାରି ପାରେ ନାହିଁ । ତାହାହେଲେ ଶରୀରରେ ପୀଡ଼ା ଜାତ ହୁଏ ।

ଲୋମକୂପସବୁ ପରିଷ୍କାର ରଖିବା ଉଚିତ । କାର୍ଯ୍ୟ କରିବା ସମୟରେ ଏବଂ ଏଣେତେଣେ ବୁଲି ଖେଳି କରିବାବେଳେ ଆମ ଦେହରେ ଧୂଳି ମଇଳା ପଡ଼େ । ଲୋମମୂଳରୁ ବାହାରିବା ତେଲ ସହିତ ଏହି ଧୂଳି, ମଇଳା ମିଶେ । ଏହା ଜଳରେ ନ ଧୋଇଲେ ଚର୍ମର ଛିଦ୍ର ସକଳ ବନ୍ଦ ହୋଇଯାଏ । ଏଣୁ ଶରୀରକୁ ନାନା ରୋଗ ଆସେ ।

ସମସ୍ତ ଶରୀର ଉତ୍ତମରୂପେ ଧୋଇବା ଉଚିତ, କାରଣ ଚର୍ମର ପ୍ରତ୍ୟେକ ଭାଗର ଲୋମକୂପରୁ ଝାଳ ଓ ତେଲ ବାହାରେ । ଯେଉଁମାନେ ପ୍ରତିଦିନ ସ୍ନାନ କରନ୍ତି, ସେମାନଙ୍କ ଶରୀର ସୁସ୍ଥ ରହେ । ସର୍ବଦା ସେମାନଙ୍କ ଦେହରେ ଅଧିକ ବଳ ଏବଂ ମନରେ ଆନନ୍ଦ ରହେ ।

ଭାରତବର୍ଷ ଗରମପ୍ରଧାନ ଦେଶ । ଏଣୁ ଆମ୍ଭମାନଙ୍କ ଦେହରୁ ଅଧିକ ଝାଳ ବହେ । ପ୍ରତିଦିନ ଦେହରେ ବେଶି ଧୂଳି ବସେ । ଏଭଳି ଦେଶରେ ପ୍ରତ୍ୟହ ପ୍ରତ୍ୟେକ ଲୋକର ସମସ୍ତ ଶରୀର ନିୟମିତ ଭାବରେ ଧୋଇ ନିର୍ମଳ ରଖିବା ନିତାନ୍ତ ଆବଶ୍ୟକ ।

ପ୍ରଶ୍ନ—

ଅତି କ୍ଷୁଦ୍ର ପଦାର୍ଥ କି ଉପାୟରେ ସ୍ପଷ୍ଟ ଦେଖାଯାଏ ?

ଦେହକୁ କହିଁରୁ ରୋଗ ଆସେ ? କଣ କଲେ ଶରୀର ସୁସ୍ଥ ରହେ ।

'ଛତ୍ର, ଲୋମକୂପ, ପରସ୍ପର, ଗନ୍ଧପ୍ରଧାନ, ଧର୍ମମିତ୍ର—
ଏମାନଙ୍କର ଅର୍ଥ କହ'।

## ଇନ୍ଦ୍ରଧନୁ

ଇନ୍ଦ୍ରଧନୁ ବର୍ଷାଦିନରେ ଆକାଶରେ ଦେଖାଯାଏ । ତାହାକୁ କେହି କେହି ରାମଧନୁ ମଧ୍ୟ କହୁଥାନ୍ତି । କିନ୍ତୁ ପ୍ରକୃତରେ ତାହା ଇନ୍ଦ୍ରଙ୍କର ବା ରାମଙ୍କର ଧନୁ ନୁହେ ।



ଇନ୍ଦ୍ରଧନୁ ପରି ସୁନ୍ଦର ଦୃଶ୍ୟ ପ୍ରକୃତିରେ ବିରଳ । ସେଥିରେ ସାତ ପ୍ରକାର ବର୍ଣ୍ଣ ଦେଖାଯାଏ, ଯଥା:—ଲାଲ, ନାରଙ୍ଗି, ହଳଦିଆ, ସବୁଜ, ନୀଳ, ଗାଢ଼ ନୀଳ ଓ ବାଇଗଣି । ବର୍ଣ୍ଣଗୁଡ଼ିକ ମିଶି ବକ୍ର ଆକାରରେ ଆକାଶରେ ବସ୍ତୃତ ହୋଇଥାଏ ।

ବର୍ଷାକାଳରେ କେବେ କେବେ କ୍ଷୁଦ୍ର କ୍ଷୁଦ୍ର ଜଳବିନ୍ଦୁ ବୃଷ୍ଟି ହେବାର ତୁମ୍ଭେମାନେ ଦେଖିଥିବ । ତାହାକୁ ଲୋକେ ମେଘର ଗୁଣ୍ଡାଗୁଣ୍ଡି ବା ଗୁଣ୍ଡାଝଡ଼ି କହୁଥାନ୍ତି । ସେହି ସମୟରେ ସୂର୍ଯ୍ୟର ବିପରୀତ ଦିଗରେ ଇନ୍ଦ୍ରଧନୁ ଦେଖାଯାଏ । ବଡ଼ ବର୍ଷା ହେବାବେଳେ ତାହା ଦେଖା ଯାଏ ନାହିଁ ।

ସୂର୍ଯ୍ୟକିରଣ ସେହି କ୍ଷୁଦ୍ର ଜଳବିନ୍ଦୁ ଉପରେ ପଡ଼ିବାମାତ୍ରେ ତହିଁରେ ଥିବା ସାତ ଗୋଟି ବର୍ଣ୍ଣ ଆକାଶରେ ପୃଥକ୍ ପୃଥକ୍ ପ୍ରକାଶ ପାଏ । ଆମ ଆଗରେ ଯଦି ବୃଷ୍ଟି ହେଉଥାଏ ଏବଂ ପଛଆଡ଼େ ସୂର୍ଯ୍ୟ ଥାଏ, ତାହାହେଲେ ଆମ୍ଭେମାନେ ଇନ୍ଦ୍ରଧନୁ ଦେଖି ପାରୁଁ । ବୃଷ୍ଟି ହେବାବେଳେ ପୂର୍ବ ଦିଗରେ ସୂର୍ଯ୍ୟ ଥିଲେ ପଶ୍ଚିମ ଦିଗରେ ଇନ୍ଦ୍ରଧନୁ ଦେଖାଯାଏ ।

ତୁମ୍ଭେମାନେ ଏକ ଉପାୟରେ ଇନ୍ଦ୍ରଧନୁର ମନୋହର ବର୍ଣ୍ଣ ସବୁ ଯେ କୌଣସି ସମୟରେ ଦେଖି ପାରିବ । ପୋଖରୀର ସ୍ନାନ କରିବା ଭୁଠରେ କୁଳ୍‌କୁଳା ପାଣି ସୂର୍ଯ୍ୟର ବିପରୀତ ଦିଗରେ ଉପରକୁ ଫୁର୍କି ପକାଅ । ସେହି ଜଳବିନ୍ଦୁଗୁଡ଼ିକରେ ସାତଟି ବର୍ଣ୍ଣ ସ୍ପଷ୍ଟ ଦେଖି ପାରିବ ।

ବର୍ଷା ଋତୁରେ କେବେ କେବେ ଗୋଟିଏ ବଡ଼ ଏବଂ ଗୋଟିଏ ଛୋଟ ଇନ୍ଦ୍ରଧନୁ ଏକ ସମୟରେ ଦେଖାଯାଏ । କିନ୍ତୁ ଛୋଟଟି ପରି ବଡ଼ଟି ଅଧିକ ଉଜ୍ଜ୍ୱଳ ଦେଖାଯାଏ ନାହିଁ ।

ସକଳ ସମୟରେ ଇନ୍ଦ୍ରଧନୁର ଉଚ୍ଚତା ସମାନ ହୁଏ ନାହିଁ । କେବେ କେବେ ତାହା ଅଧିକ ଉଚ୍ଚ ହୋଇ ବୃହତ୍ ଦେଖାଯାଏ; କେବେ କେବେ ଅବା ଅଳ୍ପ ଉଚ୍ଚ ରହି କ୍ଷୁଦ୍ର ଦେଖାଯାଏ । ଆକାଶରେ ସୂର୍ଯ୍ୟ ଅଳ୍ପ ଉପରେ ଥିବାବେଳେ ଇନ୍ଦ୍ରଧନୁ ଅଧିକ ଉଚ୍ଚ ଦିଶେ ଏବଂ ସୂର୍ଯ୍ୟ ଅଧିକ ଉପରେ ଥିବା ସମୟରେ ତାହା ସାମାନ୍ୟ ଉଚ୍ଚ ହୋଇ ପ୍ରକାଶ ପାଏ ।

ପ୍ରଶ୍ନ—

ଇନ୍ଦ୍ରଧନୁ କେବେ ଓ କେଉଁଠାରେ ଦେଖାଯାଏ ?

ସେଥିରେ କେତେ ପ୍ରକାର ବର୍ଣ୍ଣ ଦେଖା ଯାଏ ?

କେଉଁ ଉପାୟରେ ଇନ୍ଦ୍ରଧନୁର ସପ୍ତବର୍ଣ୍ଣ ସହଜରେ ତିଆରି କରି ପାରିବ ?

ପ୍ରକୃତି, ଗାଢ଼, ବିସ୍ତୃତ, ବିନ୍ଦୁ, ବିପରୀତ, ପୃଥକ୍, ମନୋହର— ଏ ଶବ୍ଦମାନଙ୍କର ଅର୍ଥ କହ ।



## କପା

ଆହାର ଛଡ଼ା ମନୁଷ୍ୟର ଅନ୍ୟ କେତେକ ପଦାର୍ଥ ମଧ୍ୟ ଆବଶ୍ୟକ ହୁଏ । ସେହି ସମସ୍ତ ପଦାର୍ଥ ମଧ୍ୟରେ ବସ୍ତ୍ର ଅତି ପ୍ରଧାନ । ପିନ୍ଧିବାକୁ ଲୁଗା ନ ଥିଲେ ମନୁଷ୍ୟ ସଂସାରରେ ଏକ ମୁହୂର୍ତ୍ତି ମଧ୍ୟ ଚାଲି ନ ପାରେ ।

ଆମ୍ଭେମାନେ କପାତୁଲାରୁ ସୂତା କାଟି ଲୁଗା ତିଆରି କରୁଁ । ଗଛରେ କପା ଫଳେ, କପାତୁଳାରୁ ସୂତା ବାହାର କରାଯାଏ । ଏଣୁ କପାଗଛ ଆମ୍ଭମାନଙ୍କର ବିଶେଷ ଉପଯୋଗୀ ।

ଶୀତପ୍ରଧାନ ଦେଶର ଲୋକେ ବିଶେଷ ଭାବରେ ଲୋମବସ୍ତ୍ର ବ୍ୟବହାର କରନ୍ତି । ଗ୍ରୀଷ୍ମ ଦେଶର ଲୋକମାନେ କପାଲୁଗା ଅଧିକ ପିନ୍ଧନ୍ତି । କପାତୁଲାରୁ ଭାରତବର୍ଷର ପ୍ରାୟ ସକଳ ପ୍ରକାର ବସ୍ତ୍ର ପ୍ରସ୍ତୁତ ହୁଏ । ଏଣୁ ଏ ଦେଶର ଅନେକ ସ୍ଥାନରେ କପାଚାଷ କରାଯାଏ ।

ଆମ ଦେଶର ଲୋକେ ପୂର୍ବ କାଳରେ ହାତ ତନ୍ତରେ ଲୁଗା ବୁଣୁଥିଲେ । ସେତେବେଳେ ଏଠାରୁ କେତେ ପ୍ରକାର ବସ୍ତ୍ର ଭିନ୍ନ ଭିନ୍ନ ଦେଶକୁ ପଠା ଯାଉଥିଲା । ବର୍ତ୍ତମାନ ଭାରତର କେତେକ ଅଞ୍ଚଳରେ

ଲୁଗା-କଳ ବସି ଅଛି । ସେଥିରେ ସରୁ ଲୁଗା ତିଆର ହୁଏ । ଲଣ୍ଡନର ଲୁଗାବେପାରିମାନେ ଆମ ଦେଶରୁ ତୁଳା ମଗାଇ ନେଇ କଳ ସାହାଯ୍ୟରେ ଲୁଗା ବୁଣିଥାନ୍ତି ।

ବର୍ଷ ମଧ୍ୟରେ କପା ଦୁଇ ଥର ଅବାଦ୍ୟ କରାଯାଏ । ପ୍ରଥମରେ, ଜ୍ୟେଷ୍ଠ ଓ ଅଷାଢ଼ରେ କପା ବୁଣା ଯାଏ । ଏହାକୁ ଗୃହଭୂମିସ୍ୟା କପା କହନ୍ତି । ଦ୍ୱିତୀୟ ଥର, ଆଶ୍ୱିନ ଓ କାର୍ତ୍ତିକରେ କପାଗଛ ଲଗାଯାଏ । ଏହାକୁ ରବ କପା କହାଯାଏ । ଏହାକୁ ଶୀତକାଳିଆ କପା ମଧ୍ୟ କହନ୍ତି । ଗୃହଭୂମିସ୍ୟା କପାର ତୁଳା ଆଶ୍ୱିନ ଓ କାର୍ତ୍ତିକରେ ଫୁଟେ ଏବଂ ଏହି ସମୟରେ ତୋଳିବାର ଆରମ୍ଭ ହୁଏ । ରବ କପା ମାଘ ଓ ଫାଲଗୁନ ମାସରେ ଫୁଟେ । କେତେକ ସ୍ଥାନରେ ଆଉ ଏକ ପ୍ରକାର କପା ବର୍ଷା ଆରମ୍ଭରୁ ହୁଏ ଏବଂ ତାହା ପୌଷ ବା ମାଘ ମାସରୁ ଆରମ୍ଭ କରି ବୈଶାଖ ପର୍ଯ୍ୟନ୍ତ ଫୁଟିଥାଏ ।

ମାଟି ସଙ୍ଗେ ଅନେକ ପ୍ରକାର ଖତ ମିଶାଇ ଚାଷ କଲେ ଫସଲ ଉତ୍ତମ ହେବା କଥା ତୁମ୍ଭେମାନେ ଜାଣ । କପା ଚାଷରେ ମଧ୍ୟ ବିବିଧ ସାର ବ୍ୟବହୃତ ହୁଏ । ପାଉଁଶ, ଗୋବର, ପଙ୍କ, ଚୂନ, ହାଡ଼ଗୁଣ୍ଡ ଓ ହାଡ଼ପାଉଁଶ କପା ପକ୍ଷରେ ଅତି ଉତ୍ତମ ସାର । ସାର ଦେଲେ କପା ଭଲ ହୁଏ ।

କପାଗଛ ଫୁଲ ଓ ଫଳ ଧରେ । ଫଳ କ୍ରମେ ପାଚି ଫୁଟେ । ଗଛରେ ଶୁଖି ଯାଇଥିବା ଫଳରୁ ତୁଳା ତୋଳି ନିଆଯାଏ କିମ୍ବା ଅଧା ଶୁଖିଲା ଫଳ ତୋଳି ନେଇ ତାହା ଶୁଖାଇ ସେଥିରୁ ତୁଳା ବାହାର କରାଯାଏ । ପ୍ରଥମରେ ତୋଳିବାବେଳେ ବଡ଼ ବଡ଼ ନିରୋଗ ଫଳଗୁଡ଼ିକ ବାଛି ନେଇ ତହିଁରୁ ମଞ୍ଜି କାଢ଼ି ବିହନ ପାଇଁ ରଖାଯାଏ । କପା ତୋଳା



ହେବା ପରେ କପାଖାଇ ବା କଳ ଦ୍ୱାରା ତହିଁରୁ ମଞ୍ଜି ଛଡ଼ାଇ ତୁଳା ପୃଥକ୍ କରା ହୁଏ । ମଞ୍ଜି ବାହାର କରାଯାଇଥିବା ତୁଳାରୁ ସୂତା କଟା ହୋଇ ସେଥିରେ ଲୁଗା ତିଆର କରାଯାଏ ।

କପାମଞ୍ଜି ବିବିଧ ପ୍ରକାରରେ ବ୍ୟବହୃତ ହୁଏ । କପା ମଞ୍ଜିରୁ ଏକ ପ୍ରକାର ଉତ୍ତମ ତେଲ ବାହାରେ । ଏହି ତେଲରେ ସାବୁନ ତିଆର

ହୁଏ । ମଞ୍ଜିରୁ ତେଲ ବାହାରିବା ପରେ ଯେଉଁ ପେଡ଼ିଆ ରହେ, ତାହା ଖତରୂପେ ବ୍ୟବହୃତ ହୁଏ । ଏହା କ୍ଷେତର ଉତ୍କୃଷ୍ଟ ସାର ଅଟେ ।

ପ୍ରଶ୍ନ— ରେଢ଼ିକପା କାହାକୁ ବୋଲାଯାଏ ?

କପା ଅମ୍ଭମାନଙ୍କର କି କି ଉପକାର କରେ ?

ତୁଳାରୁ କପଡ଼ା ଲୁଗା ତିଆରି ହୁଏ ?

କପାକୁ ଭଲ ଭାଷାରେ କଣ କହନ୍ତି ?

ଉପଯୋଗୀ, ଶୀତପ୍ରଧାନ, ଅଞ୍ଚଳ, ବିବିଧ, କ୍ଷେତ—ଏ ପଦ ଗୁଡ଼ିକର ଅର୍ଥ ବୋଲ ।



## ମଧୁସୂଦନ ରାଓ

୧୮୫୩ ଖ୍ରୀଷ୍ଟାବ୍ଦର ଜାନୁଆରୀ ମାସ ୨୯ ତାରିଖରେ ମାଘ ଶ୍ରୀପଞ୍ଚମୀ ଦିନ ମଧୁସୂଦନ ରାଓ ପୁରୀରେ ଜନ୍ମଗ୍ରହଣ କରିଥିଲେ । ଜାତିରେ ସେ ମହାରାଷ୍ଟ୍ରୀ ବ୍ରାହ୍ମଣ । ପିଲାଦିନେ ସେ ଭୁବନେଶ୍ୱର ଓ ପୁରୀରେ ପଢ଼ିଥିଲେ । ପୁରୀ ଜିଲାସ୍କୁଲରେ ପଢୁଥିବାବେଳେ ତାଙ୍କୁ ଶିକ୍ଷକମାନେ ବଡ଼ ଭଲ ପାଉଥିଲେ । ସେ ଅତି ପରିଶ୍ରମୀ, ଶାନ୍ତ ଓ ବୁଦ୍ଧିମାନ୍ ଥିଲେ । ସେ ପ୍ରତ୍ୟେକ ଶ୍ରେଣୀର ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରୁଥିଲେ । ୧୮୬୯ ସାଲରେ ପ୍ରବେଶିକା ପରୀକ୍ଷା ପାସ୍ କରି ସେ କଟକ ଗଲେ ।

ମଧୁସୂଦନ ରାଓ କଟକ କଲେଜରେ ଏଫ୍. ଏ. ପଢ଼ା ଆରମ୍ଭ କଲେ । ସେଠାରେ ସେ ବ୍ରାହ୍ମ ଧର୍ମ ଗ୍ରହଣ କଲେ । ସେ ଏହି ସମୟରେ ଅନେକ ଇଂରାଜୀ, ସଂସ୍କୃତ ଓ ବଙ୍ଗଳା ଗ୍ରନ୍ଥ ପାଠ କରିଥିଲେ । ସେ ୧୮୭୧ ଖ୍ରୀଷ୍ଟାବ୍ଦରେ ଏଫ୍. ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ।



କଲିକତା ଯାଇ ବି. ଏ. ପଢ଼ିବାପାଇଁ ମଧୁସୂଦନଙ୍କର ଭାରି ଇଚ୍ଛା ଥିଲା । କିନ୍ତୁ ପିତା ତାଙ୍କୁ ଦୂର ସ୍ଥାନକୁ ପଠାଇଲେ ନାହିଁ । ଏଣୁ ସେ ଆଉ ବି. ଏ. ପଢି ପାରିଲେ ନାହିଁ । ସେ ପଢ଼ା ଛାଡ଼ି ପ୍ରଥମରେ ଯାଜପୁର ସ୍କୁଲରେ ହେଡମାଷ୍ଟର ହୋଇ ରହିଲେ । ଏଠାରେ ପ୍ରାୟ ଦେଢ଼ ବର୍ଷ କାର୍ଯ୍ୟ କରିବା ପରେ ସେ ବାଲେଶ୍ୱର ଜିଲା ସ୍କୁଲର ଶିକ୍ଷକରୂପେ ନିଯୁକ୍ତ ହେଲେ । ଏହି ସମୟରେ ସେ ଅନେକଗୁଡ଼ିଏ କବିତା ଓ ପ୍ରବନ୍ଧ ଲେଖିଥିଲେ । ତାଙ୍କର ପାଣ୍ଡିତ୍ୟ ଓ ଲେଖା ଦେଖି

ସମସ୍ତେ ବହୁ ପ୍ରଶଂସା କଲେ । ପରେ ସେ ବହୁତ ସ୍ଥାନରେ ଶିକ୍ଷକ ଓ ଡେପୁଟି ଇନ୍‌ସ୍ପେକ୍ଟର କାମ କରି ଶେଷରେ ଓଡ଼ିଶାର ସ୍କୁଲ ଇନ୍‌ସ୍ପେକ୍ଟର ହେଲେ । ତାଙ୍କ ପରିଶ୍ରମ ଓ ବୁଦ୍ଧିରେ ପ୍ରୀତ ହୋଇ ଗଭର୍ଣ୍ଣମେଣ୍ଟ ତାଙ୍କୁ 'ରାୟ ବାହାଦୁର' ପଦ ଦେଲେ । ସେ ପ୍ରଶଂସା ସହିତ କେତେକ ବର୍ଷ ସରକାରୀ କାମ କରି ୧୯୧୨ ଖ୍ରୀଷ୍ଟାବ୍ଦର ଡିସେମ୍ବର ୨୮ ତାରିଖରେ ପରଲୋକ ଗମନ କଲେ ।

ମଧୁସୂଦନ ରାଓ ତାଙ୍କ ଜୀବନଟା ପଢ଼ିବାରେ, ପଢ଼ାଇବାରେ, ବ୍ରାହ୍ମଧର୍ମ ପ୍ରଚାର ଓ ପୁସ୍ତକ ରଚନାରେ କଟାଇଥିଲେ । ତାଙ୍କର ପ୍ରାୟ ସମସ୍ତ ପୁସ୍ତକ ଓଡ଼ିଶା ଓ ମାନ୍ଦ୍ରାଜ ପ୍ରଦେଶର ସ୍କୁଲସମୂହରେ ବ୍ୟବହୃତ ହୋଇଥିଲା । ସେ ଛାତ୍ର ଓ ଶିକ୍ଷକମାନଙ୍କର ବିଶେଷ ଉପକାର କରିଥିଲେ । ସେ ଅନେକ ପତ୍ରିକା ବାହାର କରିଥିଲେ ଏବଂ ବହୁ ସଭା ସମିତି ବସାଇଥିଲେ । ସେ କଟକର 'ଭିକ୍ଟୋରିଆ ସ୍କୁଲ' ପ୍ରତିଷ୍ଠା କରିଥିଲେ ।

ମଧୁସୂଦନ ରାଓ ଅତି ଦୟାଳୁ, ଧାର୍ମିକ ଓ ନ୍ୟାୟବାନ୍ ଲୋକ । ତାଙ୍କ ସ୍ୱଭାବ ଓ ଚରିତ୍ର ଅତି ଉତ୍ତମ ଥିଲା । ସେ ଜଣେ ବଡ଼ ଦାତା । ଗରିବର ଦୁଃଖ ଦେଖି ତାଙ୍କ ହୃଦୟ ତରଳି ଯାଉଥାଏ । ସେ ଦୀନ ଦରିଦ୍ରମାନଙ୍କୁ ଧନ ବସ୍ତ୍ର ଦାନ କରୁଥିଲେ । ଏଣୁ ଲୋକେ ତାଙ୍କୁ 'ଦୟାସାଗର' ବୋଲି କହୁଥିଲେ । ଅତିଥି ସେବା ତାଙ୍କର ସୋତ୍ଥ୍ୟ-ପ୍ରିୟ କାର୍ଯ୍ୟ ଥିଲା । ପିତାମାତା ଓ ଗୁରୁଜନଙ୍କଠାରେ ତାଙ୍କର ବଡ଼ ଭକ୍ତି ଥିଲା । ପାଣ୍ଡିତ୍ୟ, ବିନୟ ଓ ଦାନଧର୍ମରେ ମଧୁସୂଦନ ରାଓ ସମସ୍ତଙ୍କୁ ସନ୍ତୁଷ୍ଟ କରିଥିଲେ ।

ପ୍ରଶ୍ନ:—

ମଧୁସୂଦନ ରାଓ କିପରି ଲୋକ ଥିଲେ ?

ସେ କ କ କାର୍ଯ୍ୟ କରୁ ଥିଲେ ?

ଖ୍ରୀଷ୍ଟାବ୍ଦ, ଉତ୍ତୀର୍ଣ୍ଣ, ନିଯୁକ୍ତ ହେଲେ, ପ୍ରବନ୍ଧ, ପାଣ୍ଡିତ୍ୟ, ପ୍ରଚାର, ବ୍ୟବହୃତ, ପ୍ରତିଷ୍ଠା, ବସ୍ତ୍ର, ଅତିଥିସେବା, ଗୁରୁଜନ, ବନ୍ଦୀ—ଏ ପଦଗୁଡ଼ିକର ଅର୍ଥ ଲେଖ ।

# ଆମ ଦେଶର କୃଷକ

ଭାରତବର୍ଷର କୃଷକ ବଡ଼ ସରଳ ଜୀବନ କଟାଏ । ସେ ଯାହା ଅର୍ଜ୍ଜନ କରେ, ସେଥିରେ ସେ ସନ୍ତୁଷ୍ଟ । ଏହି ସନ୍ତୋଷ ଯୋଗେ ତାହାର ଜୀବନ ସୁଖ ଶାନ୍ତିରେ ପୂର୍ଣ୍ଣ । ଯେଉଁ ବର୍ଷ ଫସଲ ଭଲ ହୁଏ, ସେତେବେଳେ କୃଷକ ଆନନ୍ଦ ଲାଭ କରେ । ଫସଲ ନଷ୍ଟ ହୋଇଗଲେ ଘର ଚଳାଇବା ପାଇଁ ସେ ଋଣ କରିଥାଏ ।

କୃଷି କରିବା ପାଇଁ ତାହାର ବେଶି ଧନ ଲୋଡ଼ା ହୁଏ । ତାହାକୁ ବଳଦ, ଲଙ୍ଗଳ ଇତ୍ୟାଦି କିଣିବାକୁ ହୁଏ । କୃଷକ ତ ଗରିବ । ସେ ଏହି ସବୁ ପଦାର୍ଥ କିଣିବାପାଇଁ ଋଣ କରେ । ଯାହା ଆଦାୟ ହୁଏ, ତହିଁରେ ସେ ନିଜ କୁଟୁମ୍ବ ପୋଷେ, କିଛି ଆଉ ବଳେ ନାହିଁ । ଏଣୁ ସେ ଶୀଘ୍ର ଋଣ ଶୁଝି ପାରେ ନାହିଁ । ବର୍ଷକୁ ବର୍ଷ ଋଣ କରିଥିବା ଟଙ୍କାର ସୁଧ ବଢ଼ି ଯାଏ । ଏହିପରି ସେ ସାହୁକାରର ଦାସ ହୋଇ ପଡ଼େ, କଷ୍ଟ ଭୋଗ କରେ ।

କୃଷକ ଅତି ପରିଶ୍ରମୀ । ସେ ଦୁଃଖ କଷ୍ଟ ସହ୍ୟ କରି ଜାଣେ । ସେ ନିଜ କୁଟୁମ୍ବ ଧରି କୁଡଆ ଖଣ୍ଡିକରେ ରହେ । ଅତି ଅଳ୍ପ ମୂଲ୍ୟର



ମୋଟ ଲୁଗା ପିନ୍ଧେ ଏବଂ ଜାଉ, କାଞ୍ଜି ମୋଟା ଭାତ ଖାଇ ବଞ୍ଚେ । ତା ଘରର ଚାଳିଆ ସବୁ ପତଳ ବା ମାଟିରେ ଛଆଯାଇ । ଏପରି ଅବସ୍ଥାରେ ମଧ୍ୟ ସେ ତୃପ୍ତ ରହେ । କିନ୍ତୁ ଫସଲ ପୋଡ଼ି ଗଲେ ତାହାର ସର୍ବନାଶ ଘଟେ ।

କୃଷକକୁ ଆଡ଼ମ୍ବର ଭଲ ଲାଗେ ନାହିଁ । ତା ବାପ ଗୋସାଇଁ-ବାପ ଯେପରି ସାମାନ୍ୟ ସରଳ ଭାବରେ ବଞ୍ଚିଥିଲେ, ସେ ସେପରି ବଞ୍ଚିବାକୁ ଇଚ୍ଛା କରେ । ସେ ସର୍ବଦା ଆନନ୍ଦରେ ରହେ । ସାହୁକାରର ଗଞ୍ଜଣା ଛଡ଼ା ତାହାର ଆଉ କିଛି କଷ୍ଟ ନାହିଁ ।

ସରକାର କେବେ କେବେ କୃଷକକୁ ଅଳ୍ପ କଲନ୍ତରରେ ଋଣ ଦେଇ ତାହାକୁ ଗାଁ ସାହୁକାରର ଚଢ଼ା କଲନ୍ତରରୁ ରକ୍ଷା କରିଥାନ୍ତି ।

ଯଥେଷ୍ଟ ସାହାଯ୍ୟ ପାଇଲେ ତାହାର ମଙ୍ଗଳ ହେବ ଏବଂ ଦେଶର ଉନ୍ନତି ହେବ ।

ପ୍ରଶ୍ନ—

କୃଷକ କାହିଁକି ଅନାହାରରେ ଦିନ କଟାଏ ?
ସରକାର ତାହାଙ୍କୁ କିପରି ସାହାଯ୍ୟ କରନ୍ତି ?
କୃଷକ, ସରଳ, ତୃପ୍ତ, ଅଡ଼ମ୍ବର, ଉଚ୍ଛଳା, ସୁଦ, ଯଥେଷ୍ଟ, ମେରୁଦଣ୍ଡ—ଏ ପଦଗୁଡ଼ିକର ଅର୍ଥ ଲେଖ ।

—***—

## ଆମର ସମ୍ରାଟ

ଏଠାରେ ଯାହାଙ୍କର ଛବି ଦେଖୁଅଛି, ସେ ଆମ୍ଭମାନଙ୍କର ସମ୍ରାଟ୍ ପଞ୍ଚମ ଜର୍ଜ । ସେ ଇଂଲଣ୍ଡର ରଜା ଏବଂ ଭାରତବର୍ଷର ଚକ୍ରବର୍ତ୍ତୀ ଅଟନ୍ତି । ସେ ୧୮୬୫ ସାଲ ଜୁନ୍ ମାସ ୩ ତାରିଖରେ ଜନ୍ମଗ୍ରହଣ କରିଥିଲେ ।

ଶ୍ରୀମତୀ ଭିକ୍ଟୋରିଆ ପଞ୍ଚମ ଜର୍ଜଙ୍କର ପିତାମହୀ ଥିଲେ । ସେ ଇଂଲଣ୍ଡର ରାଣୀ ଏବଂ ଆମ୍ଭମାନଙ୍କର ଚକ୍ରବର୍ତ୍ତିନୀ ହୋଇଥିଲେ । ତାଙ୍କ ମୃତ୍ୟୁ ପରେ ତାଙ୍କର ବଡ଼ ପୁଅ ସପ୍ତମ ଏଡ୍‌ୱାର୍ଡ଼ ଇଂଲଣ୍ଡର ରାଜା ଓ ଭାରତର ସମ୍ରାଟ୍ ହୋଇଥିଲେ । ଏଡ୍‌ୱାର୍ଡ଼ ୧୯୧୦ ସାଲରେ ପ୍ରାଣତ୍ୟାଗ କରିବାରୁ ତାଙ୍କ ପୁଅ ଜର୍ଜ (ପଞ୍ଚମ) ବର୍ତ୍ତମାନ ଆମର ସମ୍ରାଟ୍ ହୋଇ ଅଛନ୍ତି ।

ଆମ ସମ୍ରାଟଙ୍କ ପତ୍ନୀଙ୍କର ନାମ ମେରି । ୧୮୯୩ ସାଲରେ ଜର୍ଜ ମେରିଙ୍କୁ ବିବାହ କରିଥିଲେ ।

ଜର୍ଜଙ୍କ ଭଳି ଅତି ବଡ଼ ରାଜା ଓ ସମ୍ରାଟ ଏହି ପୃଥିବୀରେ ନାହାନ୍ତି । ତାଙ୍କର ଅନେକ ପ୍ରଜା ଅଛନ୍ତି ।



ସେ ଇଙ୍ଗଲଣ୍ଡର ଲଣ୍ଡନ ନଗରରେ ବାସ କରନ୍ତି । ସେ ଆମ ଦେଶକୁ ଦୁଇ ଥର ଆସି-ଥିଲେ । ଯୁବରାଜ ଥିବା ସମ-ୟରେ ୧୯୦୫ ସାଲରେ ଥରେ ଆସିଥିଲେ, ଆଉ ଥରେ ୧୯୧୧ ସାଲରେ ସମ୍ରାଟରୂପେ ଆସିଥିଲେ ।

ଜର୍ଜ ଅତି ଉତ୍ତମ ରାଜା । ସେ ଅତ୍ୟନ୍ତ ଧୀର ଓ ଦୟାଳୁ । ପ୍ରଜାମାନଙ୍କ ସୁଖରେ ସେ ଆନନ୍ଦ ଲାଭ କରନ୍ତି ଏବଂ ସେମାନଙ୍କ ଦୁଃଖରେ ଦୁଃଖିତ ହୁଅନ୍ତି । ଏଣୁ ପ୍ରଜାମାନେ ତାଙ୍କୁ ବଡ଼ ଆଦର, ପ୍ରେମ କରନ୍ତି ଏବଂ ସବୁବେଳେ ତାଙ୍କର ମଙ୍ଗଳ କାମନା କରନ୍ତି ।

ଜର୍ଜଙ୍କ ପାଇଁ ତୁମ୍ଭମାନଙ୍କୁ କଣ କରିବାକୁ ହେବ ? ତାଙ୍କୁ ନିରାପଦ ଓ ସୁଖରେ ରଖିବାକୁ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରିବାକୁ ହେବ । ସମସ୍ତେ ଏହା କହ:—

ହେ ପରମେଶ୍ୱର ! ଆମ ସମ୍ରାଟଙ୍କୁ ଦୀର୍ଘ ଜୀବନ ଦିଅ, ଶାନ୍ତି ଓ ସନ୍ତୋଷ ଦିଅ । ତାଙ୍କ ପରିବାରକୁ ସୁଖରେ ରଖ ।

ପ୍ରଶ୍ନ—ଆମ ସମ୍ରାଟଙ୍କୁ ଜର୍ଜ ପଞ୍ଚମ ବୋଲି ଡାକୁଁ କାହିଁକି ? ପ୍ରଜାମାନେ ତାଙ୍କୁ କାହିଁକି ଆଦର କରନ୍ତି ? ଇଂଲଣ୍ଡ ଦେଶରେ କେଉଁ

ତାଙ୍କର ଲୋକେ ଅଛନ୍ତି ? ଚକ୍ରବର୍ତ୍ତୀ, ପିତାମହୀ, ଚକ୍ରବର୍ତ୍ତିନୀ, ମୃତ୍ୟୁ, ନୃପପଦ, ପରିବାର—ଏ ପଦମାନଙ୍କର ଅର୍ଥ ଲେଖ ।



## ନରସିଂହ ଦାସ

ଗଞ୍ଜାମ ଜିଲ୍ଲାର ଗୁମୁସର ତାଲୁକାରେ କାନକୁଟ୍ଟୁରୁ ବୋଲି ଗୋଟିଏ ପଲ୍ଲୀଟିଏ ଅଛି । ସେଠାରେ ଏକ କରଣ ବଂଶ ବାସ କରନ୍ତି । ନରସିଂହ ଦାସ ୧୮୬୬ ସାଲରେ ଏହି ବଂଶରେ ଜନ୍ମ ଗ୍ରହଣ କରିଥିଲେ ।

ବିଦ୍ୟାଶିକ୍ଷାର ଉପଯୁକ୍ତ ସମୟ ହେବାରୁ, ତାଙ୍କ ପିତା ତାଙ୍କୁ ଗ୍ରାମର ପାଠଶାଳାକୁ ପଠାଇଲେ । ନରସିଂହ ଦାସ ଅଳ୍ପ କାଳ ମଧ୍ୟରେ ପାଠଶାଳାର ଶିକ୍ଷା ଶେଷ କଲେ । ସେ ସବୁବେଳେ ମନ ଦେଇ ପଢ଼ୁଥାନ୍ତି ଏବଂ ପିତା, ମାତା ଶିକ୍ଷକମାନଙ୍କ ନିକଟରେ ଅପୂର୍ବ ଭକ୍ତି ରଖିଥାନ୍ତି ।

ପରେ ସେ ରସଲକୋଣ୍ଡାର ମଧ୍ୟ-ଇଂରେଜୀ ବିଦ୍ୟାଳୟରେ ପଢ଼ିବାକୁ ଗଲେ । ସେଠାରେ ସେହି ସମୟରେ ଉଚ୍ଚ ଇଂରେଜୀ ବିଦ୍ୟାଳୟ ନ ଥିଲା । ସେ ସେଠାରେ ଇଂରେଜୀ, ଓଡ଼ିଆ ସଙ୍ଗେ ସଙ୍ଗେ ତେଲୁଗୁ ଭାଷା ମଧ୍ୟ ଉତ୍ତମରୂପେ ଶିକ୍ଷା କଲେ । ସେ ପ୍ରତ୍ୟେକ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରୁଥିଲେ । ସେ ଅତ୍ୟନ୍ତ ଶାନ୍ତ, ବୁଦ୍ଧିମାନ୍ ଓ ପରିଶ୍ରମୀ । ଏଣୁ ଶିକ୍ଷକମାନେ ସନ୍ତୁଷ୍ଟ ହୋଇ ତାଙ୍କୁ କେବେ କେବେ ପୁରସ୍କାର ଦେଉଥିଲେ ।

ସେହି ସ୍କୁଲର ପଢ଼ା ସାରି ନରସିଂହ ଦାସ ବ୍ରହ୍ମପୁରରେ ଯାଇ ଅଧ୍ୟୟନ କଲେ । ସେଠାରେ ସେ ପ୍ରଶଂସା ସହିତ ମାଟ୍ରିକ୍ୟୁଲେଶନ୍



ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ପରେ ସେ କୌଣସି କାରଣରୁ ଅଧିକ ଆଉ ପଢ଼ି ନ ପାରି ସରକାରୀ ଚାକିରି କରିବାକୁ ଲାଗିଲେ । ପ୍ରଥମରେ ସେ ରସଲକୋଣ୍ଡାରେ ଜଣେ କିରାଣି ହୋଇ ରହିଲେ । ପରେ ସେ ପ୍ରାୟ ୨୩ ବର୍ଷ କାଳ ଗଞ୍ଜାମର ବିଭିନ୍ନ ସହରରେ ସବ୍‌ରେଜିଷ୍ଟ୍ରାର୍ କାମ କରୁଥିଲେ ।

ନରସିଂହ ଦାସ ଅତ୍ୟନ୍ତ ଦୟାଶୀଳ ଓ ପରୋପକାରୀ ଥିଲେ । ସେ ନିଜ ଶକ୍ତି ଅନୁସାରେ ଦରିଦ୍ର ଲୋକମାନଙ୍କୁ ଏବଂ ଗରିବ ଛାତ୍ରମାନଙ୍କୁ ସାହାଯ୍ୟ କରୁଥିଲେ । କୌଣସି ଛାତ୍ରକୁ ଦେଖିବା ମାତ୍ରେ ସେ

ତାହାଙ୍କୁ ଆନନ୍ଦରେ ଖୁଣ୍ଟେଇ ପକାଇ ନାନା ଉପଦେଶ ଦେଉଥାନ୍ତି । ଓଡ଼ିଆ ଛାତ୍ରମାନେ ବି.ଏ, ଏମ୍. ଏ ପାସ୍ କରି ବଡ଼ ଲୋକ ହୁଅନ୍ତୁ ଏବଂ ଦେଶର ମଙ୍ଗଳ କରନ୍ତୁ, ଏହା ସେ ସବୁବେଳେ କାମନା କରୁଥିଲେ ।

ଗରିବ ଚଷାମାନଙ୍କର ଦୁଃଖ କଷ୍ଟ ଘୁଞ୍ଚାଇବାକୁ ସେ ପ୍ରାଣପଣେ ଚେଷ୍ଟା କରୁଥିଲେ । ସେହି ସମୟର ମାନ୍ଦ୍ରାଜ ଲାଟ ସାହେବ ଥରେ ରସଲକୋଣ୍ଡା ଯାଇଥିଲେ । ସେତେବେଳେ ନରସିଂହ ଦାସ ସାହେବଙ୍କୁ ଗୁମୁସର ପ୍ରଜାଗଣଙ୍କ ଅଭାବ ଅସୁବିଧା ଜଣାଇ ସେମାନଙ୍କର ବହୁ ଉପକାର କରିଥିଲେ ।

ନରସିଂହ ଦାସଙ୍କ ମନରେ ଲେଶ ମାତ୍ର ଗର୍ବ, ଅଭିମାନ ନ ଥିଲା । ତାଙ୍କ ସଙ୍ଗେ ଯେ ଥରେ କଥାବାର୍ତ୍ତା କରେ, ତାହାଙ୍କୁ ସେ ଜୀବନଯାକ ମନେ ରଖିଥାନ୍ତି । ତାଙ୍କର ପରିଚିତ ଯେ କୌଣସି ଲୋକ ଗରିବ ହେଉ, ଅଳ୍ପ ବେତନର ସାମାନ୍ୟ କିରାଣି ଜଣେ ହେଉ ପଛକେ, ତାହାଙ୍କୁ ଦେଖିବାକ୍ଷଣି ସେ ବହୁ ଆଦରରେ କଥାବାର୍ତ୍ତା କରୁଥିଲେ । ଏହି ଗୁଣ ଯୋଗୁଁ ତାଙ୍କୁ କି ଓଡ଼ିଆ କି ତେଲୁଗୁ ସମସ୍ତେ ଭଲ ପାଉଥିଲେ । ତାଙ୍କର ଗୁଣ ଯେପରି ସୁନ୍ଦର, ରୂପ ମଧ୍ୟ ସେହିପରି ସୁନ୍ଦର । ସେ ସର୍ବଦା ହସହସ ମୁଖରେ କଥାବାର୍ତ୍ତା କରୁଥିଲେ । ସେ ଜିଲ୍ଲା, ଦେଶ ଓ ଜାତିର ମଙ୍ଗଳ ନିମନ୍ତେ ବହୁ ପରିଶ୍ରମ କରିଥିଲେ ।

ସେ ବ୍ରହ୍ମପୁରରେ ୧୯୧୩ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସର ୧୮ ତାରିଖରେ ପ୍ରାଣତ୍ୟାଗ କଲେ । ତାଙ୍କ ମୃତ୍ୟୁରେ ଓଡ଼ିଆମାନେ ଗଭୀର ଶୋକ ପ୍ରକାଶ କରିଥିଲେ ।

ପ୍ରଶ୍ନ:—

ଗଞ୍ଜାମ ମାନଚିତ୍ରରେ ରସଲକୋଣ୍ଡା ଓ ବ୍ରହ୍ମପୁର ଦେଖାଅ ।

ନରସିଂହ ଦାସ କି ପ୍ରକାରର ଲୋକ ଥିଲେ ?

ଅନୁସାରେ, ଦୟାଶୀଳ, ପରୋପକାରୀ, କାମନା, ଲେଶ, ମୃତ୍ୟୁ ଶୋକ — ଏମାନଙ୍କର ଅର୍ଥ କହ ।



## ମୂର୍ଖ ପୁତ୍ର

ବିଷ୍ଣୁଶର୍ମା ନାମରେ ଜଣେ ଗରିବ ବ୍ରାହ୍ମଣ ଥିଲେ । ତାଙ୍କର ଚାରି ପୁଅ । ସେ ଅତି ଉତ୍ତମ ଲୋକ । ଏହି କାରଣରୁ ତାଙ୍କୁ ସମସ୍ତେ ବଡ଼ ଭଲ ପାଉଥିଲେ । କିନ୍ତୁ ପୁଅମାନଙ୍କର ସ୍ୱଭାବ ଅତି ମନ୍ଦ ଥିବାରୁ ସେ ସର୍ବଦା ଚିନ୍ତିତ ରହୁଥିଲେ ।

ତାଙ୍କ ଜ୍ୟେଷ୍ଠ ପୁତ୍ର ଦିବାରାତ୍ରି ଜୁଆଖେଳରେ ମାତି ରହୁଥିଲା । ଦ୍ୱିତୀୟ ପୁତ୍ର ବଡ଼ ଦୁଷ୍ଟ ଓ ଅମାନିଆ । ତୃତୀୟ ପୁତ୍ରଟି ମିଥ୍ୟାବାଦୀ । ଚତୁର୍ଥ ପୁତ୍ରଟି ସବୁବେଳେ ଚୋରି କରୁଥାଏ ।

ଦିନେ ବିଷ୍ଣୁଶର୍ମା ପୁଅମାନଙ୍କୁ କହିଲେ, 'ଜୁଆ ଖେଳ ମନୁଷ୍ୟ ଉଚ୍ଛନ୍ନ ହୋଇଯାଏ ଏବଂ ତା କୁଳ ମଧ୍ୟ ସର୍ବନାଶ କରି ପକାଏ । ଜୁଆ ଖେଳରେ ଯୁଧିଷ୍ଠିର କିପରି କଷ୍ଟ ଭୋଗିଥିଲେ, ତାହା ତୁମେମାନେ ଶୁଣିଥିବ । ଦୁଷ୍ଟ ଲୋକକୁ ସମସ୍ତେ ଘୃଣା କରନ୍ତି । ମିଥ୍ୟା କହିବା ମହା ପାପ । ମିଥ୍ୟାବାଦୀକୁ କେହି ବିଶ୍ୱାସ କରନ୍ତି ନାହିଁ । ଚୋର ପରି ନୀଚ ଲୋକ ଜଗତରେ ନାହିଁ । ଏଭଳି ଲୋକ ବଞ୍ଚିଲ ମରିଯିବା ଭଲ ।'

ଏହା ଶୁଣି ପୁତ୍ରମାନେ ବିଶେଷ ଲଜ୍ଜା ପାଇଲେ, ଦୁଃଖିତ ହେଲେ । ସେମାନେ ମନ୍ଦ ସ୍ୱଭାବ ଛାଡ଼ି ଜଣେ ପଣ୍ଡିତଙ୍କ ନିକଟରେ

ବିଦ୍ୟାଶିକ୍ଷା କଲେ । ଦେଖୁ ଦେଖୁ ସେମାନେ ବହୁ ଶାସ୍ତ୍ର
ଲେ । ଗୁରୁ ଜଣଯାକ କେତୋଟି ମନ୍ତ୍ର ମଧ୍ୟ ଶିଖିଲେ ।

ବଡ଼ ପୁଅ 'ଅସ୍ଥି ସଂଘଟନୀ ବିଦ୍ୟା' ଶିଖିଥିଲା । ସେ ଏହି ବିଦ୍ୟା-
ରେ ମୃତ ଜନ୍ତୁର ଅସ୍ଥି ସବୁ ଯୋଡ଼ି ପାରୁଥିଲା । ଦ୍ୱିତୀୟ ପୁଅ
'ସଂସଞ୍ଜନ ମନ୍ତ୍ର' ଜାଣିଥିଲା । ସେ ଏହି ମନ୍ତ୍ର ପଢ଼ି ମୃତ ଜନ୍ତୁର
ଲରେ ମାଂସ ଲଗାଇ ପାରୁଥିଲା । ତୃତୀୟ ପୁଅକୁ 'ଚର୍ମଯୋଜନୀ
ଦ୍ୟା' ଜଣା ଥିଲା । ସେ ଏହି ବିଦ୍ୟା ସାହାଯ୍ୟରେ ମୃତ ଜନ୍ତୁର
ଦରେ ଚର୍ମ ଯୋଡ଼ି ପାରୁଥିଲା । କନିଷ୍ଠ ପୁଅ 'ସଞ୍ଜୀବନୀ ବିଦ୍ୟା'
ସ କରିଥିଲା । ସେ ଏହି ବିଦ୍ୟାଦ୍ୱାରା ମୃତ ଜନ୍ତୁକୁ ପ୍ରାଣ ଦେଇ
ଥିଲା ।

ଦିନେ ଗୁରୁ ଭାଇ କୌଣସି ଏକ ପଲ୍ଲୀକୁ ଯିବାବେଳେ ବାଟରେ
... ଗଦା ଦେଖିଲେ ...
ଖାଇବାକୁ ଇଚ୍ଛା କଲେ । ବଡ଼ ଭାଇ ତା ମନ୍ତ୍ରଟି ତିନି ଥର ଉଚ୍ଚାରଣ
ହାଡ଼ ଗଦାଟିକୁ ଛୁଇଁ ଦେଲା । ଅସ୍ଥି ସବୁ ସେହିକ୍ଷଣି ଗୋଟିଏ
ଟି କଙ୍କାଳ ହୋଇଗଲା । ଦ୍ୱିତୀୟ ଭାଇ ତା ବିଦ୍ୟାବଳରେ
ଲଟିରେ ମାଂସ ଲଗାଇ ଦେଲା । ତୃତୀୟ ଭାଇ ତା ମନ୍ତ୍ରଟି ଉଚ୍ଚାରଣ
ବା କ୍ଷଣି ପଶୁର ଦେହ ଚର୍ମରେ ଢାଙ୍କି ହୋଇଗଲା ।

ଏହା କି ପଶୁ ବୁଝି ପାରୁଛ ପିଲାଏ ? [redacted]ାଧିରେ, ବାଘଟିଏ !
। ବାଘର ପ୍ରାଣ ନ ଥିଲା ।

ସବୁ ସାନ ଭାଇ ତ 'ମୃତସଂଜୀବନୀ ବିଦ୍ୟା' ଜାଣେ; ସେ
ଚନ୍ଧୁଛି କେତେବେଳେ ! ସେ ତା ମନ୍ତ୍ରରେ ବାଘକୁ ଜୀବନ ଦେଇ
ଲା । ବାଘ ତ ହିଂସ୍ର ଜନ୍ତୁ -- ସେ ହଠାତ୍ ଛିଡ଼ା ହୋଇ ଗୁରୁ
କୁ ଖାଇଦେଲା ।

ପିଲାଏ, ଗୁରୁ ଭାଇ ମଧ୍ୟରେ ମୂର୍ଖ କିଏ କହି ପାରିବି

ପ୍ରଶ୍ନ—

ବିଷ୍ଣୁଶର୍ମାଙ୍କ ପୁଅମାନେ ମନ୍ଦ ସ୍ୱଭାବ ଛାଡ଼ିଲେ କିପରି ?

ମୃଗ ଭାଇ ପ୍ରାଣ ବଞ୍ଚାଇଲେ କାହିଁକି ?

ଜ୍ୟେଷ୍ଠ, ମିଥ୍ୟାବାଦୀ, ଉଦ୍ଧତ, ମୂଢ଼, କଙ୍କାଳ, ଉଚ୍ଚାରଣ

ଏମାନଙ୍କର ଅର୍ଥ କଣ ?

— ❊ —

## ଈଶ୍ୱର

ଦେଖନ୍ତି ଈଶ୍ୱର ମୋତେ ପ୍ରତିଦିନ
କାର୍ଯ୍ୟ କରେଁ ଖେଳେଁ ଯେବେ,
[illegible] ମୁହିଁ
ଖେଳେ ଥାଏଁ ଶୁଏଁ ଯେବେ;
ଭାତ ଖାଏଁ ଅବା ଜଳ ପିଏଁ ମୁହିଁ
ବସି ବସି ପଢ଼େଁ ଯେବେ,
ସୁଖେ ହସେଁ ଅବା କାନ୍ଦେଁ, କଷ୍ଟରୁ
ଦେଖନ୍ତି ଈଶ୍ୱର ତେବେ ।୧।
ଯେବେ ଥାଏଁ [illegible]ାନ୍ତ ବା ଅବା ଦୁର୍ଦାନ୍ତ
ଯେବେ ଭଲ ମନ୍ଦ ଯେବେ,
ଯେବେ ଆନନ୍ଦିତ ଯେବେ ବିଷାଦିତ
ଯେବେ ଦୁଃଖୀ ସୁଖୀ ଯେବେ,
ଛିଣ୍ଡାଏଁ ସୁନ୍ଦର ଉପବନେ ଥିବା
ସୁରଙ୍ଗ କୁସୁମ ଯେବେ,